ଇତିଶ୍ରୀ ମହାପୁରାଣେ

ଲେଖକ :
ଶ୍ରୀ ପରମାନନ୍ଦ ଅଧିକାରୀ
କଳାଶ୍ରୀ ଭବନ
ଅଧିକାରୀ ସାହି, କୁଜଙ୍ଗ, କଟକ

ପ୍ରକାଶକ :
ଶ୍ରୀ ରାଧାଶ୍ୟାମ ମହାନ୍ତି
ସାଥୀମହଲ
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ :
ଶ୍ରୀଗୁଣ୍ଡିଚା, ୧୯୮୦

ପ୍ରଚ୍ଛଦପଟ :
ଅସୀତ୍ ମୁଖାର୍ଜି

ମୁଦ୍ରଣ :
ଶ୍ରୀ ବସନ୍ତ କୁମାର ଦାଶ
ଶ୍ରୀ ସତ୍ୟନାରାୟଣ ପ୍ରେସ
ତିଗରପଡ଼ା, କଟକ

ମୂଲ୍ୟ :
ସାଧାରଣ ଟ ୧୦-୦୦
ଶୋଭନ ଟ ୧୨-୦୦

ITISHREE MAHAPURANE
Writer :
Sri Paramananda Adhikari.

Publisher :
Sri Radhashyam Mohanty
Sathi Mahal
Binoda Bihari, Cuttack—753002
Price : Rs 12-00

# ଉତ୍ସର୍ଗ

ବିଶିଷ୍ଟ-ହାସ୍ୟ-ରସ-ସ୍ରଷ୍ଟା,

ଗାଳ୍ପିକ,

ଔପନ୍ୟାସିକ,

ସାହିତ୍ୟଭୂଷଣ ଶ୍ରୀ ଉଦୟ ନାଥ ଷଡ଼ଙ୍ଗୀ

ଶ୍ରୀ ରାମଚନ୍ଦ୍ର ମିଶ୍ର (ଫତୁରାନନ୍ଦ)

ଅଧ୍ୟାପକ ମହାପାତ୍ର ନୀଳମଣି ସାହୁଙ୍କ

କର-କମଳରେ·······

**ସ୍ନେହର ପରମାନନ୍ଦ**

କଳାଶ୍ରୀକୁଟୀର

ଜୋବ୍ରା, କଟକ

ତା ୧୪।୭।୮୦, ସୋମବାର

ଶ୍ରୀଗୁଣ୍ଡିଚା

ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ, କବି, ପ୍ରାବନ୍ଧିକ, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର, ଗୀତିକାର ଓ ସବୁଜ ଯୁଗସ୍ରଷ୍ଟା, ପଦ୍ମଭୂଷଣ ଡକ୍ଟର **କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ** ଅଭିମତ :-



**ଆନନ୍ଦାତ୍ ଖଲ୍ୱିମାନି ଭୂତାନି ଜାୟନ୍ତେ**

'ଇତିଶ୍ରୀ ମହାପୁରାଣେ'ର ମନୋଜ୍ଞ ଗଳ୍ପରାଜି ଓଡ଼ିଆ ସାହିତ୍ୟରେ ହାସ୍ୟରସ ସୃଷ୍ଟି କରିବାରେ ପ୍ରଥମ ଶ୍ରେଣୀର ଅଧିକାର ଦାବି କରେ । ଗଳ୍ପ ଛଳରେ, ଘଟଣା ସମାବେଶରେ, ଅସୀମ ଉତ୍କଣ୍ଠା ଜଗାଇ, ନାଟକୀୟ ବିବର୍ତ୍ତନ ହିଁ ଶ୍ରୀମାନ୍ ପରମାନନ୍ଦଙ୍କ ବର୍ଣ୍ଣାଢ୍ୟ ଶୈଳ୍ପିକ କଳା କୌଶଳର ମୌଳିକତାକୁ ଚହ୍ଲାଇଦିଏ । ରସିକତାର ସୁଦୃଢ଼ ଭିତ୍ତିଭୂମି ଉପରେ ବ୍ୟଙ୍ଗ ବା ହାସ୍ୟ ରସର ଅବତାରଣା କରି ଲେଖଣୀ ତାଙ୍କର କୁସୁମାକୀର୍ଣ୍ଣ ହୋଇଛି ।

ଇତିଶ୍ରୀ ମହାପୁରାଣେ, ପିଙ୍ଗଳାର ଶୁଭ ବିବାହ, ଘରଣୀଙ୍କ ଭଉଣୀ, କହି ଦେଉଥାଏ ପରକୁ, ମଠ ଆଉ ମାଠ, ମୋଟା ବୁଢିଆର ସୂକ୍ଷ୍ମ ବିଚାର, ଓ ବ୍ରହ୍ମରାକ୍ଷସ ପ୍ରଭୃତି ଗଳ୍ପଗୁଡିକ ତାଙ୍କର କେବଳ ସ୍ୱ ଗୁଣରେ ରସୋତ୍କୀର୍ଣ୍ଣ ହୋଇ ନାହିଁ , ଏକାନ୍ତ ସ୍ୱାଦ୍ୟ ଓ ଜୀବନ୍ତ ହୋଇଛି । ବିଚିତ୍ର ସୃଷ୍ଟିର କୁହୁକ ଅବା ରଙ୍ଗ-ବୈଚିତ୍ର୍ୟ ଓ ସୁବାସ ଖେଳାଇ ଦେଇ ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି ଉପବନରେ ଅମର ସ୍ରଷ୍ଟା ଭାବରେ, କୁହୁଧ୍ୱନି ସୃଷ୍ଟି କରିବାରେ ସେ ସମ୍ପୂର୍ଣ୍ଣ ସକ୍ଷମ ହୋଇଛନ୍ତି । ଶ୍ରୀମାନ୍ ପରମାନନ୍ଦ ଏକାଧାରରେ କବି, ଭାବୁକ, ଗାଳ୍ପିକ, ଔପନ୍ୟାସିକ ପ୍ରାବନ୍ଧିକ, ସଙ୍ଗୀତଜ୍ଞ, ଗୀତିକାର ଓ ସମ୍ମାନନୀୟ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ପଣ୍ଡିତ ଗୋବିନ୍ଦ ରଥ ଏବଂ ଲୋକ ସେବକ ପଣ୍ଡିତ

ଲକ୍ଷ୍ମୀନାରାୟଣ ସାହୁଙ୍କ ପର ସୁନାମ ଧନ୍ୟ ସଙ୍ଗଠକ । ତାଙ୍କର କୃତି ଓ କୃତିତ୍ୱ ସମ୍ପର୍କରେ ଚିନ୍ତାକଲେ ମନରେ ଯୁଗପତ୍ ଆନନ୍ଦ ଓ ବିସ୍ମୟ ଜାତ ହୁଏ । ସେ କେବଳ ପରମାନନ୍ଦର ଅଧିକାରୀ ନୁହନ୍ତି, ସର୍ବାଧିକାରୀ ଅଟନ୍ତି । ତେଣୁ କହିବାକୁ ଇଚ୍ଛାହୁଏ ।

"କଳା କାହ୍ନୁ କୁହୁକ ଜାଣେ

ଯେଣିକି ଚାହିଁଲେ ଦିଶଇ ତେଣେ ।"

**କାଳନ୍ଦୀ ଚରଣ ପାଣିଗ୍ରାହୀ**

ତା ୧୩ । ୮ । ୮୦



ଓଡ଼ିଶାର ସ୍ୱନାମଧନ୍ୟ ସାହିତ୍ୟିକ, କବି, ସବୁଜ ଯୁଗ ସ୍ରଷ୍ଟା, ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀର ସଭାପତି, ଜଷ୍ଟିସ **ହରିହର ମହାପାତ୍ରଙ୍କ** ଅଭିମତ :—

'ଇତିଶ୍ରୀ ମହାପୁରାଣ'ର ଗଳ୍ପଗୁଡ଼ିକ ବହୁଦିନ ତଳର ଲେଖା । ଶ୍ରଦ୍ଧାସ୍ପଦ ପରମାନନ୍ଦ ଅଧିକାରୀଙ୍କର ବର୍ତ୍ତମାନର ପରିଣତ ସାହିତ୍ୟିକ ଖ୍ୟାତି ଅନୁସାରେ ତାହାର ବିଚାର କରିବା ସମୀଚୀନ ହେବ ନାହିଁ । ସାହିତ୍ୟିକ ଜୀବନରେ ଏ ଗଳ୍ପ ମାଳା ତାଙ୍କର ଖଡ଼ିପାଠ । ସେହି ଦୃଷ୍ଟିରୁ ସମୁନା, ରଙ୍ଗିଆ ବୋଉ, ଘରଣୀଙ୍କ ଭଉଣୀ, ଚୁଟି ସର୍ବସ୍ୱ ପାଣୁ ମାହାନ୍ତି, ଦାଣ୍ଡିବସା ପୁଅ, ରାୟ ବାହାଦୁର ବିଷ୍ଣୁମଲ୍ଲିକ, ହରିଗୁଣ ପଧାନ, ଅଖାଇ ନାନା, ମୃଦୁସୁଲ, ଚୌଖମ୍ବା ଦେବୀ ପ୍ରଭୃତିଙ୍କର ସର୍ଜନା, ବର୍ଣ୍ଣନା ଓ ଲାଞ୍ଛନା ଅତି ପ୍ରଶଂସନୀୟ ହୋଇଛି । ଶବ୍ଦ ବିନ୍ୟାସ ଓ ଭାଷା ସରଳ, ମଞ୍ଜୁଳ ଓ ପ୍ରାଞ୍ଜଳ । ଢଗ, ଢମାଳି, ସବୁ ଜାଗାରେ ଖାପ ଖାଇଛି, ସ୍ଥାନ ଓ ପାତ୍ର ପରିମାପରେ । ବହୁ ଲୋକଙ୍କୁ ବହୁ ସମୟରେ ଏହି ଗଳ୍ପଗୁଡ଼ିକ ପଢ଼ିବାକୁ ସୁଖ ଲାଗିବ ।

**ହରିହର ମହାପାତ୍ର**
ତା ୯ । ୮ । ୧୯୮୦

ଓଡ଼ିଶାର ବିଶିଷ୍ଟ ଗାଳ୍ପିକ, ପ୍ରାବନ୍ଧିକ, କବି, ଶିକ୍ଷାବିତ୍, ସାହିତ୍ୟ ଏକାଡ଼େମୀର ଉପସଭାପତି, ଅଧ୍ୟାପକ **ରାଜକିଶୋର ରାୟଙ୍କ** ଅଭିମତ :-



ସର୍ବଜନ ବିଦିତ ଐନ୍ଦ୍ରଜାଳିକ—ସଙ୍ଗଠନ ଶକ୍ତି ସହିତ ଆକର୍ଷଣୀୟ ପ୍ରତିଭାର ସ୍ଫୁରଣ ଘଟିଛି ଆୟୁଷ୍ମାନ୍ ପରମାନନ୍ଦଙ୍କଠାରେ । ତାଙ୍କ ଲିଖିତ 'ଇତିଶ୍ରୀ ମହାପୁରାଣେ' ଏକ— ସାର୍ଥକ ସୃଷ୍ଟି । ମହା-ଜୀବନର ଗାଥାକୁ ଅନ୍ତଃଭୂତିସିଦ୍ଧ କଥାକୁ, ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଦ୍ୱାରା ସେ ଏପରି ମନୋଜ୍ଞ କରିଛନ୍ତି ଯେ ପୁସ୍ତକର ପ୍ରଥମ ଗଳ୍ପକୁ ପଢ଼ିବାକୁ ଆରମ୍ଭ କଲେ ଶେଷ ଗଳ୍ପ ଯାଏ ନପଢ଼ି ରହିହୁଏ ନାହିଁ । 'ଇତିଶ୍ରୀ ମହାପୁରାଣେ' ହେଉଛି ତାଙ୍କ ଲେଖକ ଜୀବନର ସାଫଲ୍ୟର ମାଇଲ ଷ୍ଟୋନ୍, ସନ୍ଦେହ ନାହିଁ ।

ମୁଁ ତାଙ୍କୁ ହାର୍ଦ୍ଦିକ ଆଶୀର୍ବାଦ କରୁଛି, ତାଙ୍କର ପଥ ଫୁଲ ଚନ୍ଦନରେ ହେଉ, ସେ ଅମର ହେଉନ୍ତୁ ଓ ତାଙ୍କର ଲେଖନୀ ଅମୃତ-ବର୍ଷୁଉ ।

**ରାଜକିଶୋର ରାୟ**
ତା ୨୩ । ୭ । ୮୦
ବାହୁଡ଼ା, ପୁରୀ

ଓଡ଼ିଶାର ବରିଷ୍ଠ ସମାଲୋଚକ, ଗବେଷକ, ପ୍ରାବନ୍ଧିକ, ଗାଳ୍ପିକ, କବି, ସଂକଳକ, ଅନୁବାଦକ, ସୁନାମ ଧନ୍ୟ ଶିକ୍ଷାବିତ୍, ଅଧ୍ୟାପକ ଡକ୍ଟର

**କୃଷ୍ଣଚରଣ ବେହେରାଙ୍କ**

ଅଭିମତ :—



ଆମର ପ୍ରାଚୀନ ଗ୍ରନ୍ଥମାନଙ୍କର ପୁଷ୍ପିକାରେ ଏହା ଏକ ଚମତ୍କାର କଥା—'ଇତିଶ୍ରୀ ମହାପୁରାଣେ'। ଏହା ଯେପରି ସମାପ୍ତି ସୂଚକ, ସେହିପରି ପ୍ରାରମ୍ଭ ବାଚକ ମଧ୍ୟ। ଆପାତ ଦୃଷ୍ଟିରେ କଥା-ପ୍ରସଙ୍ଗର ଶେଷ ହୁଏ ସିନା, କିନ୍ତୁ ପର ଅଧ୍ୟାୟ ବା ପର୍ବରେ ସେହି କଥା-ପ୍ରସଙ୍ଗର ସୂତ୍ର ଧରି ନୂଆ ନୂଆ ବିଷୟରେ ଅବତାରଣା କରାଯାଏ। ପଲ୍ଲୀମାନଙ୍କର ସେହି ସାନ ଭଉଣୀମାନେ—ଅର୍ଥାତ ସେହି ଧାନ ପୂରା ଗଉଣୀ ପରି ଡଉଲ ଡାଉଲ ଲହୁଣୀ ପିଣ୍ଡୁଳାମାନେ—ସେମାନଙ୍କ ସହିତ ଆମର ମଧୁର ସଂପର୍କରେ ମହାପୁରାଣରେ କି ଇତିଶ୍ରୀ ହୋଇପାରେ ? ନୈବ ନୈବ ଚ। ପରମାନନ୍ଦ ଠିକ୍ କଥାର ଖିଅ ଧରିଛନ୍ତି—ଇତିଶ୍ରୀ ମହାପୁରାଣରୁ ହିଁ ଯମୁନା ସହିତ ସଂପର୍କରେ ସେତୁ ଦୃଢ଼ କରିଛନ୍ତି। ତତ୍ପରେ କଥାର ଖିଅ ଲମ୍ବି ଯାଇଛି—ରଙ୍ଗିଆ ବୋଉ ବା ଶୈବାଳମାର କାରବାରରେ, ହନୁମନ୍ତି ଦେଈ ବା ନାଗିମା ଦେଈଙ୍କ ଚତୁରତାରେ ଏବଂ ଅପରାପର ଗଳ୍ପର ଘଟଣାବଳୀରେ ତାହା ଜଗ ଜଗନ୍ନକୁ ସ୍ପର୍ଶ କରିଛି।

ପରମାନନ୍ଦଙ୍କର ଏହି ମଜା ଗପ ବା ହସ କଥାଗୁଡ଼ିକ ଶ୍ରୋତାମାନଙ୍କୁ ମଜାଦାର୍ ମନେ ହେବ—ପାଠକମାନଙ୍କୁ ହସାଇ ପାରିବ,

ଏଥିରେ ସନ୍ଦେହ ନାହିଁ । ଆମ ଜାତୀୟ ଜୀବନରୁ ଆନନ୍ଦ କଳରବ କ୍ରମେ ଉଣା ହୋଇ ଆସୁଛି । ଜନସମାଜ ମୁଖରେ ହସର ରେଖା ଧୀରେ ଧୀରେ ଲିଭି ଆସୁଛି । ତାହା ସହିତ ରଙ୍ଗ ରସର ସାହିତ୍ୟ ସୃଷ୍ଟି ମଧ୍ୟ ଅପ୍ରଚୁଳ ହୋଇ ପଡ଼ୁଛି । ଏବେ ଆମର ରଙ୍ଗ ବ୍ୟଙ୍ଗର କବି ଲେଖକଙ୍କ ସଂଖ୍ୟା ଅଙ୍ଗୁଳିମେୟ । 'ଡଗର' ଭଳି ପତ୍ରିକାକୁ କେନ୍ଦ୍ର କରି ଏବଂ 'ସରସ ସାହିତ୍ୟ ସମିତି' ଭଳି ଗୋଟିଏ ଯୋଡ଼ିଏ ଅନୁଷ୍ଠାନର ପରିସର ମଧ୍ୟରେ ଯେଉଁ କେତେ ଜଣ ସେଭଳି କବି, ଲେଖକ ଆତଯାତ ହେଉଛନ୍ତି, ସେଇମାନେ ହିଁ ଆମର ଆଶା-ଭରସାର ସ୍ଥଳ । ଏହି ପରିସ୍ଥିତିରେ ପରମାନନ୍ଦ ନିଜର ପ୍ରଧାନ 'ହବି' ସାହିତ୍ୟ-ସଙ୍ଗଠନ କାର୍ଯ୍ୟରୁ ସମୟ ବଞ୍ଚାଇ ସାହିତ୍ୟ ସୃଷ୍ଟିରେ ବିଶେଷତଃ ମଜା ମଜା ଗପ ରଚନାରେ ମନୋନିବେଶ କରିଥିବା ଅତ୍ୟନ୍ତ ଆନନ୍ଦର ବିଷୟ ।

ମଜା ଗପ ବା ହସ କଥା ରଚନା ସହଜ ବ୍ୟାପାର ନୁହେଁ । ସାଧାରଣ ଗଳ୍ପ ଓ ମଜା ଗପ ରଚନା ମଧ୍ୟରେ ଆବେଗଗତ ତଥା ଦୃଷ୍ଟି କୋଣଗତ ପାର୍ଥକ୍ୟ ରହିଛି । ସାଧାରଣ ଗଳ୍ପ ଅତଳ ତଳ ସମୁଦ୍ର-ଗର୍ଭ ହେଲେ, ମଜା ଗପ ଖେଳ-କ୍ରୀଡ଼ାର ବେଳାଭୂମି । ଆମର ପାରମ୍ପାରିକ ନାଟ୍ୟାଭିନୟରେ ରାଜା ଓ ଦୁଆରୀର ସ୍ୱତନ୍ତ୍ର ଭୂମିକା ଭଳି ସାଧାରଣ ଗଳ୍ପ ଓ ମଜା ଗପର ଭୂମିକାରେ ପ୍ରାର୍ଥକ୍ୟ ରହିଛି । ରାଜା ଭୂମିକାରେ ଅଭିନୟ କରିବାଠାରୁ ଦୁଆରୀ ଭୂମିକାରେ ଅଭିନୟ କରିବା ଅପେକ୍ଷାକୃତ କଷ୍ଟକର । ପରମାନନ୍ଦ ଏ ବିଷୟ ହୃଦୟଙ୍ଗମ କରି ଏହି ମଜାଗପଗୁଡ଼ିକ ରଚନା କରିଥିବାର ମନେହୁଏ । 'ଇତିଶ୍ରୀ ମହାପୁରାଣେ'ର ଅଧିକାଂଶ ଗପରେ ରଙ୍ଗବ୍ୟଙ୍ଗର ଉପାଦାନ ଭରି ରହିଛି ଏବଂ ସେହି ଉପାଦାନ ଖଞ୍ଜିବାରେ ବିଶେଷ କାରୁକାର୍ଯ୍ୟ ପ୍ରଦର୍ଶନ କରି ନ ଥିଲେ ମଧ୍ୟ ପରମାନନ୍ଦ ଆମମାନଙ୍କର ଜଞ୍ଜାଳଗ୍ରସ୍ତ ଗୁରୁ ଗମ୍ଭୀର ମୁଖମଣ୍ଡଳରେ ହସ ଫୁଟାଇବାରେ ସମର୍ଥ ହୋଇଛନ୍ତି ।

ମଜା ଗପ ଓ ରମ୍ୟ ରଚନାକୁ ପରମାନନ୍ଦ ଏକ ଓ ଅଭିନ୍ନ ବୋଲି ମନେ କରିଥିବାର ଜଣାପଡ଼େ (ଗ୍ରନ୍ଥଟିର ଭୂମିକା 'ଶୁଣିବାକୁ ସାବଧାନ ହେଉ ହେ' ଦ୍ରଷ୍ଟବ୍ୟ) । ମାତ୍ର ଗଳ୍ପ ଓ ରମ୍ୟରଚନା ଏକା କଥା ନୁହେଁ । ମଜାଗପ କଥା ସାହିତ୍ୟର ଅନ୍ତର୍ଗତ କିନ୍ତୁ ରମ୍ୟ ରଚନାର

*

ପ୍ରବନ୍ଧର ସଗୋତ୍ର । ଅବଶ୍ୟ ଗପ ଭିତରେ ରମ୍ୟ ରଚନାର ଧର୍ମ ପ୍ରକାଶ ପାଇପାରେ ଏବଂ ରମ୍ୟରଚନା ମଧ୍ୟରେ ଗପ ବ ବୋଲାଯାଇ ପାରେ । ତଥାପି ଶୈଳୀ ଦୁଇଟିର ସ୍ୱାତନ୍ତ୍ର୍ୟ ଅବଧାରିତ । 'ଇତିଶ୍ରୀ ମହାପୁରାଣେ' ଗ୍ରନ୍ଥରୁ ରମ୍ୟ ରଚନାର ସ୍ୱାଦ ଅପେକ୍ଷା ଗଳ୍ପର ସ୍ୱାଦ ହିଁ ଅଧିକ ମିଳୁଛି । ରମ୍ୟ ରଚନାର ଲେଖକ ଅପେକ୍ଷା କଥାକାର ଭାବରେ ହିଁ ପରମାନନ୍ଦଙ୍କର ଅଧିକ ପରିଚୟ ପ୍ରତିପାଦିତ ହେଉଛି ।

**କୃଷ୍ଣ ଚରଣ ବେହେରା**
ତା ୧୨।୮।୮୦

# ଶୁଣିବାକୁ ସାବଧାନ ହେଉ ହେ



ଭୂମିକା ସ୍ତବରେ ଆମର ବାହୁଲ୍ୟ କରି କିଛି ବଖାଣିବାର ନ ଥିଲେ ହେଁ, ଦିନକର କଥା ଏଠାରେ ଉଲ୍ଲେଖ ନ କରି ରହି ହେଉନାହିଁ । ତାହା ଯୁଗ ଯୁଗର ଅମୂଲ୍ୟ ସ୍ମୃତି ହୋଇ ହୃଦପଦ୍ମମନ୍ଦିରରେ ସଯତ୍ନରେ ସାଇତା ହୋଇ ରହିଛି ।

ସେଥର କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ତାଳପଦାରୁ ଆସି ସୀତାପୁରରେ 'ତଗର ପ୍ରେସ'ରେ ରହୁଥାନ୍ତି । ଦଳ ଦଳ ହୋଇ କବି, ସାହିତ୍ୟିକ ଓ କଳାକାର ତାଙ୍କ ଦର୍ଶନକୁ ଯାଉଥାନ୍ତି । ତାହା ଏକ ସାରସ୍ୱତ ପୁଣ୍ୟପୀଠରେ ପରିଣତ ହୋଇଥାଏ । ଆମେ ଆଉ ଆମର ଭଉଣୀ ସ୍ୱନାମ ଧନ୍ୟା କବି ଶ୍ରୀମତୀ ତୁଳସୀ ଦାସ ଦିନେ ବରେଣ୍ୟ, ଦେଶ ସେବକ, ଋଷି ପ୍ରତୀମ ଲକ୍ଷ୍ମୀନାରାୟଣ ସାହୁଙ୍କ ସଙ୍ଗରେ ତାଙ୍କ ପାଖକୁ ଗଲୁ । ତିଙ୍କିଶାଳଠାରୁ ଢେଙ୍କାନାଳ ଯାଏ କଥା ପଡ଼ିଲା । ଆମର ଅଳ୍ପ ଅଳ୍ପ ମନେପଡ଼ୁଛି—ବୋଧହୁଏ ହାସ୍ୟରସ ସ୍ରଷ୍ଟା ଦେବ ମହାପାତ୍ର, ଗଜେନ୍ଦ୍ର ନାଥ ସାମଲ, ଫତୁରାନନ୍ଦ, ତାଙ୍କ ଯୋଗ୍ୟ ନନ୍ଦନ, ଲବ୍ଧ ପ୍ରତିଷ୍ଠ ଔପନ୍ୟାସିକ ନିତ୍ୟାନନ୍ଦ ମହାପାତ୍ର (ନିତା ଭାଇ) ଆଉ କାନ୍ତ କବିଙ୍କ ସହଧର୍ମିଣୀ ପୁଣ୍ୟମୟୀ ମାଉସୀ ଶ୍ରୀମତୀ ଲବଙ୍ଗଲତା ଦେବୀ ତାଙ୍କ ପାଖରେ ବସିଥିଲେ । ପରେ ପହଞ୍ଚିଲେ ଶିଳ୍ପୀ ଗୁରୁ ବି. ବର୍ମା, ଗଣକବି ବୈଷ୍ଣବ ପାଣି, ଠକୁର ମାୟାଧର ମାନସିଂହ, ପଦ୍ମଭୂଷଣ ଠକୁର କାଳନ୍ଦୀ ଚରଣ ପାଣିଗ୍ରାହୀ ଆଉ ବିଖ୍ୟାତ ସାହିତ୍ୟିକ ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା ମହୋଦୟ ।

ଅନେକ ସମୟ ଧରି କାନ୍ତକବିଙ୍କ ଶ୍ରୀ ମୁଖବାଣୀ ଶ୍ରବଣ କରି ନିଜକୁ ଧନ୍ୟ ମଣିବାର ସୌଭାଗ୍ୟ ଆମକୁ ମିଳିଥିଲା । ଆମ୍ଭେମାନେ ସାଷ୍ଟାଙ୍ଗ ପ୍ରଣିପାତ ବାଡ଼ି ଫେରିଲା ବେଳେ ସେ କହିଲେ—"ତମେ କଲେଜ ଟୋକାଗୁଡ଼ାକ ଫେସନରେ ଯେତିକ ସମୟ ଦେଉଛ, ସେତିକ ସମୟ 'ଡଗର' ପାଇଁ ମଜାଗପ ଲେଖୁନ—କାହିଁକି ?" କବିଗୁରୁଙ୍କ ଆଦେଶକୁ ଆମେ ଶିରୋଧାର୍ଯ୍ୟ କରି ନେଇଥିଲୁ ।

କାନ୍ତକବି ଅ ନେକ ଦିନ ହେଲା ଏହି ଧୂଳିଧୂସରିତ—ଧରଣୀରୁ, ମରଣକୁ ଅମୃତ ସୋପାନରେ ପରିଣତ କରି ବିଦାୟ ନେଇ ଗ୍ଲଲିଗଲେଣି, ମାତ୍ର ତାଙ୍କର କଥା ପଦକ ଏବେ ବି ଆମର ମନବୀଣା ତାରରେ ଭୁହାଇ ଭୁହାଇ ହୋଇ ବାଜି ଉଠୁଛି । ଦେବତା ଯେ ମଣିଷ ରୂପରେ ଆସନ୍ତି, କାନ୍ତ କବି ଆଉ ଲକ୍ଷ୍ମୀ ନାରାୟଣ ସାହୁ ପ୍ରମୁଖଙ୍କୁ ଦେଖିଲେ ସହଜରେ ଜାଣି ହୋଇପଡ଼େ । ସେତେବେଳକୁ ଆକାଶବାଣୀର ଗାୟକ ଭାବରେ ଆମର ନାଁ ହେଲାଣି । ତେଣୁ କାନ୍ତକବି ଯେତେବେଳେ ଦେଖନ୍ତି, ଆଦେଶ ହୁଏ—"ଗୀତଟିଏ ଗାଅ ।" ଆରମ୍ଭ ହୁଏ ମର୍ମସ୍ପର୍ଶୀ କାନ୍ତ ସଙ୍ଗୀତ "ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡ଼ାଇବ ହେ ।"

ସତ କହିଲେ, ଆମେ ଅନେକ ବାର ହାସ୍ୟରସାତ୍ମକ ଗଳ୍ପ, ରମ୍ୟ ରଚନା ଲେଖିବାକୁ ପ୍ରୟାସ କରିଛୁ ମାତ୍ର ନିରାଶ ହୋଇଛୁ । ବାରମ୍ବାର ଚେଷ୍ଟାରେ ସହାୟକ ହୋଇଛନ୍ତି ବିଶେଷ ଭାବରେ ପ୍ରଖ୍ୟାତ ସାହିତ୍ୟିକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ସ୍ୱନାମ ଧନ୍ୟ ହାସ୍ୟ-ରସ-ସ୍ରଷ୍ଟା ଶ୍ରୀ ରାମଚନ୍ଦ୍ର ମିଶ୍ର (ଫଚୁ ନନ୍ଦ), ସାହିତ୍ୟ ଭୂଷଣ ଶ୍ରୀ ଉଦୟ ନାଥ ଷଡ଼ଙ୍ଗୀ ଓ ବଶିଷ୍ଟ ଔପନ୍ୟାସିକ ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ ।

ଅନୁଭବ ଓ ଅନୁଧ୍ୟାନର ସାରସ୍ୱତ ସ୍ମାରକୀ ରୂପେ ଆମେ— ଲେଖିଥିବା ମଜାଗପ ବା ରମ୍ୟ ରଚନାଗୁଡ଼ିକ "ଇତିଶ୍ରୀ ମହାପୁରାଣେ" ନାମରେ ଘନ ତିମିର ଗହ୍ୱରରୁ ଏବେ ଲୋକଲୋଚନକୁ ଯାଉଛି ।

"ଇତିଶ୍ରୀ ମହାପୁରାଣେ"ର ସବୁ ଲେଖାଗୁଡ଼ିକ ପ୍ରାୟ ଡଗର, ଆସନ୍ତାକାଲି, ସମକାଳ, ସାଗର, ନୀଳ କମଳ, ବନଫୁଲ, ଜନ

ସାହିତ୍ୟ, କଳନା, ଶୁଭଶଙ୍ଖ, ସାହିତ୍ୟ ବିଚିତ୍ରା, ରବିବାର ପ୍ରଜାତନ୍ତ୍ର, ସ୍ୱରାଜ୍ୟ, କଳିଙ୍ଗ, ଜନଶକ୍ତି ଓ ମାତୃଭୂମି ପ୍ରଭୃତି ପତ୍ର ପତ୍ରିକାରେ ପ୍ରକାଶିତ ହୋଇଛି । ଅନେକ ଗୁଡ଼ିଏ ଗଳ୍ପ ପ୍ରକାଶିତ ହୋଇଛି ଉତ୍କଳରେ । ଆମେ ଏଇ ସବୁ ପତ୍ରିକାର ସଜ୍ଜନ ସମ୍ପାଦକ ମାନଙ୍କଠାରେ ଋଣୀ ।

ମଜାଗପ ବା ରମ୍ୟ ରଚନାଗୁଡ଼ିକୁ ପତ୍ର ପତ୍ରିକାରୁ ଉତାରି ପ୍ରେସ କପି ପ୍ରସ୍ତୁତକରି ରଖିଥିଲେ ଆମ ସାନ ଭଉଣୀ ବିଜୟ ଲକ୍ଷ୍ମୀ (ବଡ଼କୁନି), ଆଉ ସୁଷମା (ସାନ କୁନି) । ସେ ଦୁହିଁଙ୍କୁ ଏହି ଅବସରରେ ଶ୍ରଦ୍ଧା ଜ୍ଞାପନ କରୁଛୁ ।

ସାଥୀ ମହଲର ସ୍ୱତ୍ୱାଧିକାରୀ ଭାଇ ଶ୍ରୀ ରାଧାଶ୍ୟାମ ମହାନ୍ତି 'ଇତିଶ୍ରୀ ମହାପୁରାଣେ' ଆଶୁ ପ୍ରକାଶ କରିଥିବାରୁ, ନାନା ଜଞ୍ଜାଳ ଭିତରେ ଥାଇ ପ୍ରଖ୍ୟାତ ଶିଳ୍ପୀ ଶ୍ରୀ ଅସୀତ ମୁଖାର୍ଜି ମନୋଜ୍ଞ ପ୍ରଚ୍ଛଦ ପଛଟି ଅଙ୍କନ କରି ଦେଇଥିବାରୁ ସେ ଦୁହିଁଙ୍କୁ ଏହି ଅବସରରେ ଧନ୍ୟବାଦ ମଧ୍ୟ ଜଣାଉଛୁ । ଜୟ ଜଗନ୍ନାଥ

| | | |
|---|---|---|
| କଳାଶ୍ରୀ କୁଟୀର<br>ଯୋବ୍ରା<br>କଟକ—୩ | } | **ପରମାନନ୍ଦ ଅଧିକାରୀ**<br>ଶ୍ରୀଗୁଣ୍ଡିଚା<br>ତା ୧୪ । ୭ । ୮୦ |

# ସୂଚୀପତ୍ର

# ଇତିଶ୍ରୀ ମହାପୁରାଣେ

ଯମୁନା ଆଖିର ବଡ଼ ବଡ଼ କଳା ଡୋଳା ଦୁଇଟିକୁ ମୁଁ ଲକ୍ଷ୍ୟ କରୁଥିଲି । ତା' ଆଖିର ଆକର୍ଷଣ ମୋତେ ମୁଗ୍ଧ କରିଥିଲା । ସେ ଉଦ୍ରାଖ ରେଳ ଷ୍ଟେସନର ନବ ନିର୍ମିତ ତୃତୀୟ ଶ୍ରେଣୀ ବିଶ୍ରାମାଗାର ଭିତରେ ଗୋଟିଏ ପକ୍କା ସ୍ତମ୍ଭକୁ ଆଉଜି ଅର୍ଦ୍ଧଶାୟିତ ଅବସ୍ଥାରେ ବସିଥିଲା । ତା କୋଳରେ ବସିଥିବା ଗୋଟିଏ ଛୋଟ ଶିଶୁକୁ ସେ ଘନ ଘନ ଚୁମ୍ବନ ଦେଇ ବିବ୍ରତ କରୁଥିଲା ।

ଶିଶୁଟି—

ଖିଲ ଖିଲ କରି ହସି ଉଠିଲା ବେଳେ ସେ ହସରେ ପ୍ରତିଧ୍ୱନିତ ହେଉଥିଲା ତୃତୀୟଶ୍ରେଣୀ ବିଶ୍ରାମାଗାରର ବିରାଟକାୟ କୋଠାଟା । ଅନ୍ୟାନ୍ୟ ଯାତ୍ରୀମାନେ କୌତୂହଳବଶତଃ ମୁହୂର୍ତ୍ତେକ ତା ଆଡ଼କୁ ଅନାଉଥିଲେ ।

କିନ୍ତୁ—

ଯମୁନା ପାଖକୁ ଲାଗି ବସିଥିବା ଚମ ଧୁଡ଼ୁ ଧୁଡ଼ୁ ପାଚିଲବାଳିଆ ବୁଢ଼ୀ ତଇତନ ଦରଡ଼ା ବାଆଁ ହାତରେ ତାର ମାତବରିଆ ନଣନ୍ଦଙ୍କ ଆଉଁଷୁ ଆଉଁଷୁ ଡାହାଣ ହାତରେ ପିନ୍ଧିଲା ଲୁଗା କାନିକ ଉଠାଇ ଆଖିର ଲୁହ ପୋଛୁଥିଲା । ସେ ନାକ ସୁଉଁ ସୁଉଁ କରି—ଅନୁନାସିକ ସ୍ୱରରେ ବେଦନା ବିଧୁର କଣ୍ଠରେ ଜଣକୁ କହୁଥିବାର ଶୁଣା ଯାଉଥିଲା,—

"ବୃନ୍ଦାବନ ବାବୁ, ଯମୁନାଟା ମୋର ହାଣ୍ଡିକପାଳୀ । ଅଭଗିମା ।

"ହାତରେ କ'ଣ ସିନ୍ଦୁର ନାହିଁ, ଅଭଗିମା କପାଳରେ ନାହିଁ । ତା' ପାଇଁ ଯେତେ ଦିଅଁ ଦେବତା ସେବିଲି, ତାକୁ ଯେତେ ଔଷଧ ମୈଷଧି ଦେଲି,

ପୁଣି—

ଯେତେ ଗୁଣି ଗାରଡ଼ି କରି ପଇସା ସାରିଲି, କିଛି ଫଳ ହେଲା-ନାହିଁ । ସେ ଦିନରାତି ମନ ମାରି ବସିଲା । ଖାଇଲା ନାହିଁ କି—ପିଇଲା ନାହିଁ । ଖାଲି କହିଁ କହିଁ କରି କାନ୍ଦିଲା । ଶେଷରେ ମୋ ବଡ଼ ଝିଅର ପୁଅରୁ ଗୋଟିଏ ତାକୁ ଆଣି ଦେଲାରୁ ତା' ମନ ଟିକେ ଭଲଅଛି ।"

ବୃନ୍ଦାବନ ବାବୁ ଆଖିକି ଟେକି, ଓଠକୁ ଚେପଟା କରି ଗମ୍ଭୀର ଭାବରେ କହିଲେ—"ଯେତେହେଲେ, ମାଗି ଆଣିଲା ତିଅଣ ସୁଆଦ୍ଲାଏ ମଉସା ।"

ଚଇତନ ପରିଡ଼ା ବୁଢ଼ା ନିଜ କଥା ଉପରେ ଜୋର ଦେଇ, ପାନ କୁଟାରେ ପାନ ପୁରାଇ କହିଲା—"ନାଇଁରେ ବାପା, ପୁଅ କିଏ ? ଭଉଣୀର ପୁଅ । ନିଜର ରକ୍ତ ତ ।"

ତେବେ—

ବୃନ୍ଦାବନ ବାବୁ ସହଜରେ ଛାଡ଼ିବା ଲୋକ ନୁହନ୍ତି । ତାଙ୍କର ସାମାନ୍ୟ ଗୁଟିଏ କି ଦୋଷକୁ ବାଦଦେଲେ ସେ ଖଣ୍ଡମଣ୍ଡଳରେ ଜଣେ ଜଣାଶୁଣା ଲୋକ । ସେ କଥା ଏମିତି ବାଗରେ କହନ୍ତି ଯେ, ହାଡ଼-ସନ୍ଧି ଶୁଖିଲେଇ ହେବ । ମଲା ମଣିଷ ଚେଇଁ ଉଠିବ । ଜବାବ ନଦେଇ ରହି ହେବ ନାହିଁ । ସେ ଚଇତନ ପରିଡ଼ା ବୁଢ଼ାକୁ ବାଗରେ ଉତ୍ତର ଦେଇ କହିଲେ—"ଯେତେ ନିଜର ରକ୍ତ ହେଲେ ବି ପୋଷାପୁଅ, ଗୁଂଜାରୁଅ, ସାଉଁଟିଲା କାଣ୍ଡ କି ଯୁଝିକୁ ପାଏ ? ମଉସା ।

ତଥାପି—

ମୋର ଯାହା ମନେହୁଏ ମଉସା, ଯମୁନାର ସ୍ୱାମୀଟି ତ ଭଲପିଲା । ଚଇତନ ପରିଡ଼ା ବୁଢ଼ା ନିଆଁରେ ଲୁଣ ପଡ଼ିଲା ପରି ଫୁଟି ଉଠି କହିଲା—"ତା ନାଁ ଧରନା, ଧରନା ବାପା । ତାର ପାଇଁ ତ ଏତେ କଥା ? ସେଇଟା ଯଦି ମଣିଷ ହୁଅନ୍ତା, ମୋର ଆଉ ଚିନ୍ତା ଥିଲା କ'ଣ ? ଯମୁନା ଝୁରି ଝୁରି କଣ୍ଟା ହୁଅନ୍ତା କାହିଁକି ? ଘରୁଆଟାଏ ତ, ସବୁବେଳେ ଯାଇ ଭାଉଜ ପାଖରେ ପଶିଲା । ସେ ମାଇକିନିଆଟାଏ ପୁଣି ଏମିତି କ'ଣ କୁହୁକ ଜାଣେ ଯେ—ତାକୁ ଘଡ଼ିଏ ନ ଦେଖିଲେ ସ୍ତ୍ରୀ ବୁଦ୍ଧି ବଣା । ହେଲେ, ମୁଁ ତୋ ମୁହଁ ଦେଖି କହୁନାହିଁ ବାପା, ତୁ ଏ ଗାଆଁକୁ ତହସିଲଦାର ହୋଇ

ଆସିଲା ବେଳୁ ଯମୁନା ସବୁକଥା ଭୁଲି ଯାଇଛ୍ତୁ । ତୋର ସେଇଁ ସ୍ନେହ, ଶ୍ରଦ୍ଧା, ମଧୁର ବ୍ୟବହାର ସେଥିରେ କଏ ନଜର ନ ଦେବ ? ତୁ ହେଇ ପୁଣି ଆସିବାକୁ ଜିଗର କଲୁ, ସେ କ'ଣ ଆସିବାକୁ ମନାକଲା ?

ମୁଁ—

ଫୁଟପାଥ୍‌ର ପ୍ରସିଦ୍ଧ ପତ୍ରିକା ବିକାଳି ଶ୍ରୀ ଶୁକଦେବ ସାହୁଙ୍କ ବିଶ୍ରାମାଗାର ପତ୍ରିକା ମହଲରୁ "ବନ୍ଧୁଆଶ୍ରମ" ନାମକ ଖଣ୍ଡିଏ ପତ୍ରିକା ଆଣି ତୃତୀୟ ଶ୍ରେଣୀ ଟିକେଟଘର ଝରକା ପାଖ ଉଚ୍ଚ ଲୁହା ରେଲିଂ ଉପରେ ବସି, ଗୋଡ଼ ହଲାଉ ହଲାଉ, ଚଇତନ ପଣ୍ଡା ବୁଢ଼ା ଓ ବୃନ୍ଦାବନ ବାବୁଙ୍କ କଥାବାର୍ତ୍ତା ଶୁଣୁଥିଲି । "ଶୂନ" ଉପରେ ରାତି ଥାଉଁ ଥାଉଁ ଗୁଟ ଗୁଟଶାଳୀ ଚାଲିଗଲି ଟ୍ରେନ ଆସିବାର ଦୁଇଘଣ୍ଟା ଆଗରୁ ଟିକେଟ ଖଣ୍ଡିଏ ପାଇଁ ମୁଁ ନାରଣା ମା' ଦୁଆରେ ଧାରଣା ଦେଇଥିଲି । ଚିଡ଼ିଆଖାନାର ବିଭିନ୍ନ ଜନ୍ତୁଙ୍କୁ ଦେଖିଲା ଭଳି ମୁଁ ତୃତୀୟ ଶ୍ରେଣୀ ବିଶ୍ରାମାଗାରର ଚତୁର୍ଦ୍ଦିଗରେ ଦୃଷ୍ଟିବୁଲାଇ ବିଭିନ୍ନ ରୁଚିର ଲୋକ ଓ ଦୃଶ୍ୟକୁ ଉପଭୋଗ କରୁଥିଲି ।

ଅବଶ୍ୟ —

ମଝିରେ ମଝିରେ ଯମୁନାର ବଡ଼ ବଡ଼ କଳା ଡୋଳା ଦୁଇଟିକୁ ବେଶି ଲକ୍ଷ୍ୟ କରୁଥିଲି । ସତେ ଯେମିତି ନହୁଲୀ ବୟସୀ ଯମୁନାର ଆଖିର ଅନ୍ତରାଳରେ ଲୁଚି ରହିଥିଲା । ଅନ୍ୱେଷଣର ଇଙ୍ଗିତ, ଆବେଦନର ଆକୁତି, ଦେହକୁ ଦାହ କରିବାର ଉଦ୍ଦାମ ଅଭିଳାଷ । ଯମୁନା ଆଖିର ଲୋଭନୀୟ ବଡ଼ ବଡ଼ କଳାଡୋଳା ଦୁଇଟି ମୋ ମନରେ ଗଭୀର ଭାବରେ ରେଖାପାତ କରିଥିଲା ।

କିନ୍ତୁ—

ମୁଁ ଯମୁନାକୁ ଦେଖିଲା ପରେ ଏତେଦୂର ଭାବପ୍ରବଣ ହୋଇ ପଡ଼ିଥିଲି, ଯେ ମୁଁ ନୂଆ ଲେଖିବାକୁ ଯାଉଥିବା ଉପନ୍ୟାସର ନାୟିକା ଭାବରେ ତାକୁ ଗ୍ରହଣ କରିବା କଥା ମନେ ମନେ ଭାବୁଥିଲି ।

ବାସ୍ତବିକ୍—

ଦୁନିଆରେ ଏତେ ଲୋକ ଥାଉଁ ଥାଉଁ ଜଣେ ଜଣେ ଆଡ଼କୁ ମନ କାହିଁକି ଚାଲିଯାଏ ? ଏହାର କାରଣ ଏବେ ବି ଅବୋଧ । ଦୁନିଆରେ

କ'ଣ ସୁନ୍ଦରୀ ଅଭାବ ଥିଲେ – ଲିଓନାର୍ଡ଼ ଡାଭିନ୍‌ଚିର ମୋନାଲିସା ପଛରେ ପୁଣି ଗୋଡ଼ାଉଥିଲେ ତ ? ଏହି ସମୟରେ ବୁକିଙ୍ଗ ୱିଣ୍ଡୋ ଖୋଲିଲା । ମୁଁ ବାଘ ଶିଶୁଟି ପରି କ୍ୟୁର ପ୍ରଥମ ନମ୍ବର ହୋଇ, ୱିଣ୍ଡୋ ଭିତରେ ହାତ ପୂରାଇ ଟିକେଟ ଆଣିବାକୁ ଚେଷ୍ଟା କଲି । ବୁକିଙ୍ଗ କ୍ଲର୍କ ମହାଶୟ ମୁରୁକି ମୁରୁକି ହସି ମୋ ହାତକୁ ଠେଲି ଦେଇ କହିଲେ–"ଲେଡ଼ିଜ ଫାଷ୍ଟ, ଲେଡ଼ିଜ ଫାଷ୍ଟ।" ମୁଁ ତାଙ୍କ କଥା କିଛି ବୁଝି ପାରିଲି ନାହିଁ ।

ହାତଟି ଅଳ୍ପ ବାଟ ଫେରାଇ ଆଣି ପୁଣି ଟିକେଟ ପାଇବା ଆଶାରେ ହାତ ପୂରାଇଲି ୱିଣ୍ଡୋ ଭିତରେ, ଯେପରି ଥରେ କାମୁଡ଼ିଲା ପରେ ବି କଙ୍କଡ଼ା ଲୋଭରେ ହାତ ପୂରାଏ ଅଝଟିଆ ପିଲା ।

ମାତ୍ର–

ଏଥର ବୁକିଙ୍ଗ କ୍ଲର୍କ ଅଳ୍ପ ରାଗି ମିଠାକଡ଼ା ଭାଷାରେ ମୋତେ ଲକ୍ଷ୍ୟକରି କହିଲେ–"ମଶାଏ, ସୌଜନ୍ୟତା ଶିଖନ୍ତୁ।"

ମୁଁ ଟିକିଏ ରାଗରେ ଫୁଲି ଉଠିଲି ।

କିନ୍ତୁ ଉତ୍ତର ଦେବା ପୂର୍ବରୁ ମୋ କାନରେ କଳ କଣ୍ଠରେ କିଏ ଫୁସ୍ ଫୁସ୍ କରି କହିଲା–

"ମୋ ପାଇଁ ତିନି ଖଣ୍ଡ ଟିକେଟ ପୁରୀକୁ ଆଣନ୍ତୁ ।" ଜୋକ ମୁହଁରେ ଲୁଣ ଦେଲା ପରି ମୁଁ ଚୁପ୍ ରହି ପଛକୁ ଫେରି ଚାହିଁଲି । ମୋ କଳ୍ପନାର ନାୟିକା, କାମନାର ମାନସୀ, ପ୍ରଭାତର ପ୍ରେୟସୀ ଯମୁନା ତାର କୁସୁମ କୋମଳ ଅବୟବର ସର୍ବଶ୍ରେଷ୍ଠ ମାଂସଳାଂଶ ମୋ ଉପରେ ଲଦି ଭିଡ ଭିତରେ ଠିଆ ହୋଇଛି । ଚୁମ୍ବକ ଓ ଲୁହାର ସଂଯୋଗରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୁଏ, ସେହି ପ୍ରତିକ୍ରିୟାରେ ମୋ' ଭିତର ବୁଭୁକ୍ଷୁ ପୁରୁଷତ୍ୱ ଆକ୍ରାନ୍ତ ହୋଇଛି ।

ତଥାପି–

ସର୍କସ ବାଘକୁ ଲୁହାବାଡ଼ି ଦେଖାଇ ଦେଲେ ସେ ଯେପରି ନିଜକୁ ଅସହାୟ ମନେକରି ଦୟନୀୟ ଭାବରେ ପାହାଡ଼ୀ ମୂଷାର ନମ୍ରତା ଆଚରଣ କରେ – ସେହିପରି ଅସଂଖ୍ୟ ଲୋଲୁପ ଆଖିର ଅତ୍ୟାଚାରରେ ପ୍ରପିଡ଼ିତା ହୋଇ ମୋ ପାଖକୁ ଲାଗି ଠିଆ ହୋଇଥିଲା ଯମୁନା । ମୁଁ ବେପଥୁ କଂପିତ ଥର ଥର ହସ୍ତରେ ଯମୁନା ହସ୍ତରୁ ଟିକେଟ ପାଇଁ ଏଥର ଟଙ୍କା ନେଲି ।

ମାତ୍ର —

ମୋ ହାତରେ ମୋ' ଟିକେଟ ଟଙ୍କା ଆଉ ନଥିଲା ।

କିଏ ନେଇଥିଲା ମୁଁ ଜାଣେନା ।

ହୁଏତ—

ମେଣ୍ଟ ପୋଷ ନାହିଁ ଦୋଷ ନ୍ୟାୟରେ ନେଇଥିଲା ରଘୁରାମାୟୀ ପିକ୍ ପକେଟର ବା ଯମୁନାର ରୂପ ଲବଣ୍ୟର କାଉଁରୀ ସ୍ପର୍ଶରେ ମୋହିତ ହୋଇ ଅନ୍ୟମନସ୍କ ଭାବରେ କ୍ୟାଶ ବାକ୍ସରେ ପକାଇଥିଲେ ନିଜେ ବୁକିଂ କ୍ଲର୍କ ମହାଶୟ ! ମୋ ପାଖରେ ଆଉ କପର୍ଦ୍ଦକ ନଥିବା ହେତୁ ମୋ ତଣ୍ଟି ଶୁଖି ଅଠା ହୋଇ ଯାଇଥିଲା । ମନେ ମନେ ପ୍ରମାଦ ଗଣିଲି ମୁଁ । ତିନିଜଣଙ୍କର ଟଙ୍କା ବଢ଼ାଇ "ନରେ ବା ବାନରେ ଅଶ୍ୱତ୍ଥାମା ହତ" ବିଧାରେ କହିଲି — "ସୁଖୀପାଇଁ ଟିକେଟ ।"

ବୁକିଂ କ୍ଲର୍କ ମହାଶୟ—ଠକ୍ — ଠକ୍ — ଠକ୍—କରି ସ୍ୱତନ୍ତ୍ର ଟିକେଟରେ ତାରିଖ ଛାପି ବଢ଼ାଇ ଦେଲେ ମୋ ହାତକୁ ।

ମୁଁ ପ୍ରତିବାଦ କଲି ନାହିଁ କି କିଛି ପଚାରିଲି ନାହିଁ । ଭଗବାନଙ୍କୁ ମନେ ମନେ ଅଶେଷ ଧନ୍ୟବାଦ ଜଣାଇଲି । ଦେହରୁ ମୋର ଶ୍ରମଝାଳ ଗମ୍ ଗମ୍ ହୋଇ ବୋହିଗଲା । ମୁଁ ମୁହଁ ବୁଲାଇବା ମାତ୍ରେ ଯମୁନା ହସରେ ଜଣାଇଲା ଅଭ୍ୟର୍ଥନା । ଆଖିର ଭଙ୍ଗୀରେ ଜଣାଇଲା ଅଭିବାଦନ ।

ତା'ପରେ —

ଯମୁନା,

ମୁଁ,

ତଇତନ ଦରଜା ବୁଢ଼ା,

ଆଉ ବୃନ୍ଦାବନ ବାବୁ ଷ୍ଟେସନ ପ୍ଲାଟଫର୍ମ ଆଡ଼କୁ ମୁହାଁଇଲୁ । ସେତେବେଳକୁ ହାଓଡ଼ା ପୁରୀ ଏକସପ୍ରେସ୍ ଗାଡ଼ି ଦୀର୍ଘ ନିଶ୍ୱାସ ପକାଇ ଥକାମାରି, ଷ୍ଟେସନରେ ଠିଆହୋଇ ସାରିଥିଲା । ଆମେ ଚାରିଜଣ ଆଗପଛ ହୋଇ ଏ କମ୍ପାର୍ଟମେଣ୍ଟ ଦ୍ୱାରରୁ ସେ କମ୍ପାର୍ଟମେଣ୍ଟ ଦ୍ୱାରକୁ ଦଉଡ଼ିଲୁ । ଭିତରୁ ସବୁ ଦ୍ୱାରରେ କବାଟ ବନ୍ଦ । ପଶ୍ଚିମା ଯାତ୍ରୀଙ୍କ ସାଙ୍ଗକୁ ପୁରୀ ହବିଷ ଯାତ୍ରୀଙ୍କର ଘୋର ଭିଡ଼ ।

ତଳ ପକାଇବାକୁ ସ୍ଥାନନାହିଁ !
ଏହି ସମୟରେ ଗାଡ଼ି ହର୍ଣ୍ଣ ଦେଲା ।

ମୁଁ ନିରାଶ ହୋଇ ପଛକୁ ଅନାଇଲି ବେଳକୁ ଚଇତନ ପରିଡ଼ା ବୁଢ଼ା ଆଉ ବୃନ୍ଦାବନ ବାବୁ ଅଣନିଶ୍ୱାସୀ ହୋଇ ଗୋଟିଏ ଡବା ଭିତ କୁ ଜବରଦସ୍ତି ଚଢ଼ି ଯାଉଛନ୍ତି ।

ଅଜଗର ଦେହରେ ଅରଣ୍ୟ ବହ୍ନିର ତାତ ବାଜିଲେ ସେ ଯେପରି କଡ଼ ଲେଉଟାଏ, ଆଗକୁ ଘୁଷୁରି ଘୁଷୁରି ଗଲେ —ସେହିପରି ଏକ୍ସପ୍ରେସ ଗାଡ଼ି ହାଇମାରି ତନ୍ଦ୍ରାଳସ ଭଙ୍ଗି ଆଗକୁ ଆଗେଇଲା ।
କୌଣସି ମତେ ଯମୁନାକୁ ଲେଡ଼ିଜ କମ୍ପାର୍ଟମେଣ୍ଟରେ ଚଢ଼ାଇ ଦେଲି । ଆଉ ମୁଁ ?

କରେ କ'ଣ ?

ମୁଣ୍ଡକୁ ମୋର ଗୋଟାଏ ବୁଦ୍ଧି ପାଇଗଲା । "ଘରଣୀଙ୍କ ପାଇଁ ନେଇଥିବା ବରଦିଆ ଶାଢ଼ୀ ଖଣ୍ଡିକ ସାଙ୍ଗେ ସାଙ୍ଗେ ବ୍ୟାଗରୁ ବାହାର କରି, ମୁଣ୍ଡଉପରେ ପକାଇ ଦେଇ ଲେଡ଼ିଜ କମ୍ପାର୍ଟମେଣ୍ଟ ଭିତରକୁ ପଶିଯାଇ ଗୋଟିଏ କଣବାରିଆ ସିଟ୍‌ରେ ବସି ପଡ଼ିଲି ।

ଯମୁନା ମୋତେ ଦେଖି ବଡ ଜୋରରେ ହସୁଥିଲା । ମୁଁ କୌଶଳରେ ଓଢ଼ଣା ତଳୁ ଆଖିମାରି ନ ହସିବାପାଇଁ ଇସାରା ଦେବା ସଙ୍ଗେ ସଙ୍ଗେ ମୋ ପାଖକୁ ଲାଗି ବସିବା ପାଇଁ ଅନୁରୋଧ କଲି । ଯମୁନା ଆସି ମୋ ପାଖକୁ ବସି ଓଠ ଚିପି କରି ହସିଲା । ଅନ୍ୟ ମହିଳାମାନେ ନିଜ ନିଜ ଭିତରେ ଢିଙ୍କିଶାଳୀଠାରୁ ଢେଙ୍କାନାଳ ଯାଏ କଥାବାର୍ତ୍ତା ହେଉଥିଲେ । ସେ ବା ମୋତେ ସନ୍ଦେହ କରନ୍ତେ କାହିଁକି ?

ଯମୁନା,
ଆଉ ମୁଁ,
ବହୁତ ବହୁତ ବିଷୟରେ ଆଲୋଚନା କଲୁ ।

ମୁଁ ଦେଖିଲି, ମୋ କଥାରେ ସେ ଯେପରି ଭଲି ଯାଇଛି ମୁଁ ସେପରି ତା କଥାରେ ତରଳି ଯାଇଛି । ଅଳ୍ପ ସମୟ ମଧ୍ୟରେ ଯମୁନା ଏଭଳି ହୋଇଗଲାଯେ, ସେ ମୋ' ଜୀବନ ପଥରେ ସହଯାତ୍ରିଣୀ ସାଜିବାର ଅଭିଳାଷ ଜଣାଇଲା । ମୁଁ ଇଚ୍ଛା ବିରୁଦ୍ଧରେ "ହଁ" ଭରିଦେଲି । ବିପତ୍ତିକ

ବୋଲି ଈଶ୍ୱରଙ୍କ ନାମରେ ଶପଥ ନେଲି ! ଯମୁନା ମୁହଁରେ ହସ ଫୁଟିଲା ।

ଏତିକି ବେଳେ—

ଗୋଟିଏ ବୁଢ଼ା ହନୁ ମୋର ହଟ ସାଧିଲା । ସେ ମୋ ମୁଣ୍ଡ ଉପର ଝରକାରେ ବସି ମୋ' ଉପରେ ପୁରୀଷ ତ୍ୟାଗ କଲା । ମୁଁ ଇସ୍-ଇସ୍ କରି ଏପଟ ସେପଟ ହୋଇଗଲି । ଅନଭ୍ୟସ୍ତ ଓଢ଼ଣା ମୁଣ୍ଡରୁ ଖସି ପଡ଼ିଲା ।

ଜଣେ ଭଦ୍ର ମହିଳା ଖୁବ୍ ଜୋରରେ ଚିତ୍କାର ଶୁଡ଼ି କରିଲେ—
"ଲେଡ଼ିଜ କମ୍ପାର୍ଟମେଣ୍ଟରେ ପୁରୁଷ—ପୁରୁଷ "

ଆଉ ଜଣେ କାନ, ବେକର ଗହଣାକୁ ଉଣ୍ଡାଳି ଉଣ୍ଡାଳି କହିଲେ – "ଚୋର, ଚୋର ।"

ଆଉ ଜଣେ ମହିଳା ଅଧୀର ହୋଇ ଚେନ୍ ଟାଣି ଦେଲେ ।

ପୁରୀ ଷ୍ଟେସନ ହୋଇ ଯାଇଥିଲା ।

ଗାଡ଼ି ଠିଆ ହୋଇଗଲା । ମୁଁ ତଳକୁ କୁଦାମାରି ଦଉଡ଼ି ପଳାଇଲି । ଶାଢ଼ୀଟାକୁ ବ୍ୟାଗ ଭିତରେ ରଖିଦେଇ ଯମୁନା ଆଡ଼କୁ ପୁଣି ଆସିଲି । ଯାହା ଦେଖିଲି, ଦେହ ମୋର ଥରି ଉଠିଲା । ସେତେବେଳେ ଯାହା ମୋ ଅବସ୍ଥା ହୋଇଥିବ, ଅନୁଭବୀ ବିନା କିଏ ଜାଣିବ ?

ସେତେବେଳକୁ ମୋ ସ୍ତ୍ରୀ ସ୍ୱାତୀ ଦେବୀ ମୋ ଛଅଟି ପୁଅ ଝିଅଙ୍କ ସହିତ ପ୍ଲାଟଫର୍ମରେ ଠିଆହୋଇ ଯମୁନା ସାଙ୍ଗରେ କଥାବାର୍ତ୍ତା ହେଉଥିଲେ । ଅଦୂରରେ ଚଇତନ ପରିଡ଼ା ବୁଢ଼ା, ବୃନ୍ଦାବନ ବାବୁ ଆଉ ମୋ ସାନଭାଇ କୁମୁଦବାନ୍ଧବ ଠିଆ ହୋଇଥିଲେ ।

ପିଲାମାନେ—

ମୋତେ ଦେଖିଲା ମାତ୍ରେ—"ବାପା, ବାପା" କହି କାଖ, କାନ୍ଧରେ ଚଢ଼ିଗଲେ ।

କିଏ କହିଲା—"ବାପା, କଣେଇ"

କିଏ କହିଲା—"ଲେମନଜୁସ୍ ।'

କିଏ କହିଲା – "ବିସ୍କୁଟ୍",

ସମସ୍ତେ ଗୋଟିଏ ଗୋଟିଏ ବରାଦ କରିଗଲେ ।

ମୋ ସ୍ତ୍ରୀ ଯେତେବେଳେ ଯମୁନାକୁ ହାତ ଦେଖାଇ କହିଲେ—
"ଯ୍ୱାକୁ ତୁମେ ଚହ୍ନିଛ ?"

ମୁଁ ଅଙ୍ଗ—ଅଙ୍ଗ ହୋଇ ଫଡ଼ଆ ଜଠିଆ ଗଳାରେ କହିଲି—

'—ନା······ନା··· ।'

ଏଥର ମୋ ସ୍ତ୍ରୀ କହିଲେ—"ଏପବି ମୋ ମାଉସୀ ଝିଅ ଭଉଣୀ । ଯମୁନା, କଲେ ନମସ୍କାର କରୁନୁ ।"

ଯମୁନା କଛୁ ନ ଜାଣିଲି ଦରି—ମୋତେ ସବୁ ନମସ୍କାରଟିଏ କଲି । ମୁଁ ଭଗବାନ ମଙ୍ଗଳ କରନ୍ତୁ ବୋଲି କହିଲି ।

ଯମୁନା ଦାନ୍ତ ନକୁଟି, ଆଖିମାର ମୁ ରୁକ ମୁ ରୁକ ହସି କହିଲା—
"ତୁମେ ଏମିତ ମଣିଷଟିଏ ନା ?"

ମୁଁ କହିଲି ଇନ୍ଦ୍ରଶ୍ରୀ ମହାପୁରଣେ । ହଉ, ହଉ, ଚ୍ଲ ସମସ୍ତେ ସମୁଦ୍ର କୂଳକୁ ସୂର୍ଯ୍ୟୋଦୟ ଦେଖିବାକୁ ଯିବା ।

ଚଇତନ ପରଡ଼ା ବୁଡ଼ା କହିବାର ଶୁଣାଯାଉଥାଏ ଏମିତ କୁଳ ବୁଢ଼ାଟାଏ, ଆମର ସାଙ୍ଗରେ ଆସି ଆମକୁ ଚହ୍ଲା ଦେଉନ । ମୋ ସ୍ତ୍ରୀ ମୋତେ ସାର୍ଟିଫିକେଟ ଦେଇ କହୁଥିଲେ—

"ସେ ଭାରି ସରଳ, ଆଉ ଲଜ୍ଜାଶୀଳ ଲୋକ ।
ସେ କାହାକୁ କଛୁ କହନ୍ତ ନାହିଁ ।"



# ପିଙ୍ଗଳାର ଶୁଭ ବିବାହ

ପୃଥିବୀରେ ଅନେକ ସ୍ତ୍ରୀ ଲୋକ ଅଛନ୍ତି ଯେଉଁମାନଙ୍କର ବୟସ ସହଜରେ ଜାଣି ହୁଏ ନାହିଁ । ସେମାନେ ଦଶ ବାରଟି ସନ୍ତାନର ମା' ହୋଇ ମଧ୍ୟ ଅନୁଢ଼ା କନ୍ୟାଙ୍କ ଭଳି ଦିଶନ୍ତି । ଏଇମିତି ଜଣେ ମହିଷ ଆମ ରଙ୍ଗିଆ ବୋଉ ।

ରଙ୍ଗିଆ ବୋଉ ଆଖିରେ ଧାରେ କଜ୍ଜ୍ୱଳ, ମଥାରେ ଗାରେ ସିଂନ୍ଦୁର ନାଇ, ଗାଲରେ ଖିଲେ ପାନ ପୁରେଇ, ଝୁଣ୍ଟିଆ ଝମ ଝମ କରି ଖପରା ଡେଇଁ ଡେଇଁ ଚାଲିଗଲେ ଅଶୀ ବର୍ଷର ପାକୁଆ ବୁଢ଼ା ବି ଟିକିଏ କଣେଇ କଣେଇ ଚାହେଁ ।

ସେଥିପାଇଁ କିଏ ଅବା କଣ କରିବ ? ନାରୀ ବୋଲି ଯାହା କଲ୍ପ ହଇବ, ସେ ଜନ୍ମସ୍ଥାନ ସେଇ !

ପୁଣି—

ସବୁ ଯୁଗରେ, ସବୁ ଦେଶରେ ପର ଜନନୀର ସମସ୍ତଙ୍କର ଆଖି । ରଙ୍ଗୀଆ ବୋଉର ଚହଟ ରୂପ ଦେଖି ଅନେକ ଈର୍ଷା କରନ୍ତି ଏକଥା ମୁଁ ଜାଣେ । ଗାଆଁରେ ନୁହେଁ ଭିନ ଗାଆଁରେ ମଧ୍ୟ । ରଙ୍ଗିଆ ବୋଉ ଗେଲ, ମନ୍ଦିରରେ ଚଳାବେଳେ ଅନେକ ଆଖିର ଲୋଲୁପ ଦୃଷ୍ଟି ତାଙ୍କ ଉପରେ ନିବଦ୍ଧ ହୋଇଯାଏ ।

ବ୍ୟାଧ ଶଙ୍କିତା ହରିଣୀ ଭଳି ନାରୀ—ସୁଲଭ—ସଂଭ୍ରମରେ ସେ ସନ୍ତୁଳି ହୋଇ ଚାଲନ୍ତି । ସତେ ଯେମିତି ପୃଥିବୀରେ ସେ ଗୋଟିଏ ମାତ୍ର ସୁନ୍ଦରୀ । ସୌନ୍ଦର୍ଯ୍ୟ ପିପାସାର ସବୁ ଉପକରଣ ଯେପରି ଭରି ରହିଛି ତାଙ୍କର ଦେହରେ !



ବିବାହିତ, ଅବିବାହିତ ବହୁ ପ୍ରେମ ପାଗଳ ଯୁବକ ରଙ୍ଗିଆ ବୋଉକୁ ଦେଖିଲା ମାତ୍ରେ, କୁମାରୀ ଭାବେ ଶୁଭ ବିବାହ ପ୍ରସ୍ତାବ ଉଠାନ୍ତି ।

ଦିନକର କଥା

ଜନୈକ ଅପରିଚିତ ଭଦ୍ର ଲୋକ ବସ୍‌ରେ ରଙ୍ଗୀଆ ବୋଉଙ୍କୁ ଦେଖି ପ୍ରେମ—ବିହ୍ୱଳ ହୋଇ ପଡ଼ିଲେ । ମୋତେ ଚୁପ ଚୁପ କରି ପଚାରିଲେ ଆପଣଙ୍କ ସେ ପାଖରେ ଯେଉଁ ସୁଶ୍ରୀ କୁମାରୀ ଜଣକ ବସିଛନ୍ତି ସେ ଆପଣଙ୍କର କିଏ ହୁଅନ୍ତି କି ?

ମୁଁ କହିଲି – "ସେ ମୋ' ଧରମ ଭଉଣୀ ।"

—ନାଁ ।— ?

—ପିଙ୍ଗଳା

ତାପରେ ପ୍ରଶ୍ନ କଲେ—କି ଜାତି ?

ମୁଁ ଜବାବ ଦେଲି ହାଟୁଆ ବାଟୁଆ ଜାତି ତ । ଆଜ୍ଞା ! ସେ ସଙ୍ଗେ ସଙ୍ଗେ କହିଲେ—"ଆମେ ତ ସେହି ଜାତି ।" ଏଥର ଦ୍ୱିଧା ସଙ୍କୋଚ ହୀନ ଭାବରେ ସେ ମୋତେ ପଚାରିଲେ—"ତାଙ୍କର ଶୁଭ ବିବାହ ବିଷୟରେ ପ୍ରସ୍ତାବ ପଡ଼ିଲେ ଜବାବ ଦେବ କିଏ ?" ମୁଁ କହିଲି—"ମୁଁ । ମୁଁ ତାର ମୁରବୀ । ଭଦ୍ର ଲୋକ ଜଣକ ଭାରି ଖୁସି ହୋଇଗଲେ । ଆମେ ପାରାଦ୍ୱୀପରୁ କଟକ ଯାଉଥାଉଁ । କନ୍ଦରପୁରରେ ବସ୍ ରହିଲା ମାତ୍ରେ ଭଦ୍ର ଲୋକଟି ଅତି ଆଗ୍ରହରେ ମୋର ହାତଧରି ଜଳଖିଆ ଦୋକାନକୁ ଟାଣି ଟାଣି ନେଲେ । ମୋତେ ପେଟେ ରସଗୋଲା ଖୁଆଇଲେ ।

ବସରେ ବସିଲା ମାତ୍ରେ ପୁଣି ସେହି ବିବାହ ପ୍ରସ୍ତାବ ଆଲୋଚନାର ପୁନରାବୃତ୍ତି ଆରମ୍ଭ କଲେ । ମୁଁ ବିବାହ ପ୍ରସ୍ତାବରେ ସମ୍ମତି ପ୍ରଦାନ କଲି ।

କିନ୍ତୁ —

ତିନୋଟି ସର୍ତ୍ତରେ । ଏକରେ ପିଙ୍ଗଳାର ଭୁଜା କନ୍ୟା ବିବାହ ହେବ । ଦୁଇରେ ପିଙ୍ଗଳାର ଗହଣା ଗଣ୍ଠି ପାଇଁ ଭଦ୍ର ଲୋକ ନଗଦ ହଜାରେ ଟଙ୍କା ଦେବେ । ତିନରେ ପିଙ୍ଗଳା ଗଲାଦିନ ନିଜେ ଭଦ୍ର ବ୍ୟକ୍ତି ନେବାକୁ ସବାରୀ ଗୋପାଳ ଘେନି ଆସିବେ ।

ଭଦ୍ର ବ୍ୟକ୍ତି ଜଣକ କେବଳ ମୋର ସର୍ତ୍ତଗୁଡ଼ିକ ବିନା ଦ୍ୱିଧାରେ ଗ୍ରହଣ କଲେ ନାହିଁ ସଙ୍ଗେ ସାଙ୍ଗେ ହଜାରେ ଟଙ୍କା ମୋ' ଆଡ଼କୁ ବଢ଼ାଇ

ଦେଲେ । ଶ୍ରୀ ପଞ୍ଚମୀ ଦିନକୁ ବିବାହର ଦିନ ଠିକ୍ ହୋଇଗଲା । ପରେ ମୁଁ ଅନ୍ୟ ଜଣଙ୍କଠାରୁ ଶୁଣିଲି, ଭଦ୍ରବ୍ୟକ୍ତି ଜଣଙ୍କର ଓଜନରୁ ଅଧିକ ପିଲାପିଲି ଅଛନ୍ତି । ତୃତୀୟ କନ୍ୟାଙ୍କର ପାଣି ଗ୍ରହଣ ପରେ ପଞ୍ଚମ କନ୍ୟାଙ୍କର ପାଣି ଗ୍ରହଣ ପାଇଁ ପ୍ରାର୍ଥୀ ହୋଇଛନ୍ତି ସେ । ରଙ୍ଗିଆ ବୋଉ ମୋ କଥା ଶୁଣି, ଆଉ ଟଙ୍କା ଆଣିବାର ଦେଖି ଅବାକ ହୋଇ ଗଲେଣି । ତାଙ୍କର ଧାରଣା ବଦ୍ଧମୂଳ ହୋଇଗଲା ଯେ ମୁଁ ଯେଉଁଭଳି ଏକଜିଦିଆ ଲୋକ ତାଙ୍କୁ ନିଶ୍ଚୟ ଟଙ୍କା ମେଞ୍ଚରେ ଆଉଥରେ ବିଭା କରି ଦେବି । ସାତ ଆଠଟା ପିଲାଙ୍କୁ ଛାଡ଼ି ସେ ପୁଣି ଯିବେ କୁଆଡେ ?

ଭଲେ ମାଲେ, ଏ କି ନଲଠା କଥା । ଏପରି ଦେଗରୁଛି ଥାଇଁ ଯାହା ନ ଥାଇଁ ସେଥିପା ! ରଙ୍ଗିଆ ବୋଉଙ୍କର ମୁହଁ ଧାନ ଉଷା ହାଣ୍ଡି ପରି ଉତ୍ତୁରି ପଡ଼ିଲା ।

ଆମେ ଗୌରୀ ଶଙ୍କର ପାର୍କରେ ଓହ୍ଲାଇ ବୁଢ଼ି ଠାକୁରାଣୀ ପାଖ ବସାକୁ ଗଲାବେଳେ ବାଟରେ ରିକ୍ସାରେ ରଙ୍ଗିଆ ବୋଉଙ୍କର ରଙ୍ଗ ଦେଖିବାକୁ ମୁଁ ଟିକେ ଢଳି ହୋଇ ତାଙ୍କ ବାମ ହାତକୁ ଧରି ହସି ହସି କହିଲି

"ମୋ ରାଣୀ, ତୁମେ ରାଜି ହୋଇଯାଅ ।"

ମୁଁ ଯେତେବେଳେ ଜବାବ ଦେଇ ଭଦ୍ର ଲୋକଙ୍କଠାରୁ ଟଙ୍କା ବଏ କରିଛି ମୋର ଆଉ ଚିନ୍ତା କଣ ?

ରଙ୍ଗିଆ ବୋଉ ରିକ୍ସାରୁ ଓହ୍ଲାଇବା ମାତ୍ରେ ମୋର ସାନପୁଅ ଲଙ୍ଗଳିକା ଟିଏ ଭେଁ ଭେଁ କାନ୍ଦିଲେ । କଥାଟା ଏକାନରୁ ସେକାନ ହୋଇ ଆମ ସାଇ ସାରା ସମସ୍ତଙ୍କ କାନକୁ ଚାଲିଗଲା ।

ମୋ ସାନ ଭାଇ ଶୁଣି ଦଉଡ଼ି ଆସି କହିଲା—"ଭାଇ ?"

ମୁଁ ପଚାରିଲି—"କଣ ?"

ସେ କହିଲା—"ଯେ ମେଳା ଦେଖା ଶୁଣାନାହିଁ, ସେ ମେଳାକର କାହିଁ ପାଇଁ ?" ମୁଁ ତାକୁ ବୁଝାଇ ଦେଇ କହିଲି—ତୁ ପିଲା ଲୋକ; ପଢା ପଢିରେ ମନ ଦେ । ତୋର ସେଥିରେ ମୁଣ୍ଡ ଖେଳାଇ କଣ ଲାଭ ଅଛି ·

ସାନ ଭଉଣୀ କହିଲା—"ଭାଇ ଏକି ଲୋକ ଲଜ୍ଜା କଥା ?" ମୁଁ ତାକୁ ବି ବୁଝାଇ ଦେଲି—ତୋର ବିବ୍ରତ ହେବା ଦରକାର ନାହିଁ ତୁ ଅପେକ୍ଷା କରି ଦେଖ, କଣ ହେଉଛି ।"

ସାନ ପୁଅ ଝିଅମାନେ ଆସି ଖନ ଖନ କରି ଦରେଟି ବଚନରେ ପଚାରିଲେ—"ବାପା, ବୋଉ କୁଆଡେ ପୁଣି ବାହାହେବ ?"

ମୁଁ କହିଲି—ହଁ-ହଁ ତୁମେମାନେ ବହୁତ ପାଠ ପଢ଼ିଲେ, ବଡ଼ ହେଲେ ଜାଣିବ ବିଲାତ ଆମେରିକାରେ ଏଇମିତି ବୋଉସବୁ ଗୁଡ଼ ପଧର ବାହାନା କରି ଅନେକ ଥର ବାହା ହୁଅନ୍ତି; ମୁଁ ଅଛି ତୁମମାନଙ୍କର କଣ କ୍ଷତି ହେବ ? ପକେଟରୁ କାଢ଼ି ଲଜେନସ୍ ପ୍ୟାକେଟଟି ବଢ଼ାଇ ଦେଲି । ସେମାନେ ହସି ହସି ଚାଲିଗଲେ ।

ତା'ପରେ ପଡ଼ିଲା ମୋ' ବୋଉର ପାଳି । ସେ ଯେତେବେଳେ ଶୁଣିଲା ଉତ୍ପଣ ତମ୍ପ ପରି ଫଅଁ ଫଅଁ ହୋଇ, ନାଲି ଆଖି କାଢ଼ି ମୋତେ ପାଖକୁ ଡାକି କହିଲା—

ଆସିଲୁ କୁଳଙ୍ଗାର, ଆଗେ ମୁଁ ତୋ କାନଟାକୁ ମୋଡ଼ି ରଙ୍ଗା କରିଦିଏଁ । ଏ କି ନାଟ ଲଗାଇଛୁ ? ବାଘ ପେଟରୁ କେଉଁଠୁ ଆସି ଗୋଟାଏ ଶୃଗାଳ ଜନ୍ମ ହୋଇଛୁ । ବଂଶନାଶ ବେଳେ ତୋ ଭଳି ଘୋଡ଼ାମୁହାଁ ପୁତ୍ର ଜନ୍ମ ହୁଅନ୍ତି ସିନା !

ଅତି ବିନମ୍ରରେ ବୋଉକୁ ସାନ୍ତ୍ୱନା ଦେଇ କହିଲି—"ବୋଉଲୋ ତୁ କଣ ପାଗଳୀ ହେଲୁ, ସଂସାରରେ ଯୁଗ କେଉଁଠି ହୁଏନା । ଏଠି ହେବ ? ତୋ ସୁନାନାକି ବୋହୂକୁ ତୋ'ଠାରୁ କେହି ଛଡ଼ାଇ ନେବେ ନାହିଁ ।"

ବୋଉ ମୋ କଥା ବୁଝିଗଲା । ହସିଲା । ଖୁବ୍ ଜୋରରେ ହସିଲା । ଶ୍ରୀ ପଞ୍ଚମୀ ଦିନ ଆସି ପହଞ୍ଚିଗଲା । ମୁଁ ପିଙ୍ଗଳା ବେଶ ଭୂଷାରେ ସଜ୍ଜିତ ହେଲି । ସଜାଇଲେ ଖୋଦ ଗ୍ରାମସ୍ଥ ମାନ୍ୟବର ଭଙ୍ଗୀଆ ବୋଉ । ସେ ମୋ ବଡ଼ ଭଉଣୀ ରୂପେ ପରିଚୟ ଦେବାର ଠିକ୍ ହେଲା ।

ପୁଣି—

ଠିକ୍ ହେଲା ମୋର ପରମ ବନ୍ଧୁ କ୍ଷମା ସାଗର ବାବୁ ବଡ଼ ଭାଇର ଭୂମିକା ଗ୍ରହଣ କରିବେ । ତାଙ୍କର ଚେହେରା ଠିକ୍ ମୋ, ଚେହେରା ଭଳି । ତାଙ୍କ ସ୍ତ୍ରୀ ଅନେକ ସମୟରେ ମୋତେ ସ୍ୱାମୀ ବୋଲି ଭ୍ରମ ଡାକନ୍ତି—

ଶୁନା ଖାଇବ ?"

ମୁଁ ହସି ଦେଲେ ସେ ଅପ୍ରତିଭ ହୋଇ ଜିଭ କାମୁଡ଼ି ପକାଇ ମୁଣ୍ଡରେ ହାତେ ଓଢ଼ଣା ଟାଣି ଦିଅନ୍ତି ।

ତେବେ—

ସ୍ତୁତି-ଚନ୍ଦନ୍ଟା-ହାସିମ ଭଙ୍ଗୀଆ ବୋଉ—ଟିକିଏ ଅନ୍ତମାନାରେ ବୁଦ୍ଧିମନ୍ତ ବୋଲି ସେପରି ଭୁଲ କରନ୍ତି ନାହିଁ । ଏଥର ପିଙ୍ଗଳା ବଦାପ୍ଥର ସମୟ ଆସିଗଲା । ପୂର୍ବ ନିର୍ଦ୍ଧାରିତ ସ୍ଥାନକୁ ଆମ୍ଭେମାନେ ଗଲୁ । ଭଦ୍ର ଲୋକ ଆସି ଅନ୍ଧାରରେ ଠିଆ ହୋଇଥିଲେ । ଗୋପାଳମାନେ ସବାଖ ଡିଳେ ଧୋଇ ଅଲଗା ହୋଇଗଲେ । ମୁଁ କ୍ଷମା ସାଗର ବାବୁଙ୍କୁ ଧରି ଅନୁନାସିକ ସ୍ୱରରେ କାନ୍ଦୁଥିଲି—"ଶତ ଶତ ପଦ୍ମ ପଦେ ଦଳିଲ ହୋ ଘଇ । ଶିମ୍ବଳୀ ଫୁଲକୁ ଶେଷେ ରସିଲ ହୋ ଭାଇ ।"

କ୍ଷମାସାଗର ବାବୁ ନାକ ସୁଁଉ ସୁଁଉ କରି କହୁ ଥାଆନ୍ତି— "ଆଉମା କାନ୍ଦନା କାନ୍ଦନା, ମୁଁ ତୋତେ ନିକଟରେ ଘେନି ଆସିଛି ।"

ଭଦ୍ର ଲୋକ ଜଣେ କହୁଥାନ୍ତି—"କାନ୍ଦିବାରବା କଣ ଅଛି ? ଆମରବା କଏ ଅଛି ଯେ ତାଙ୍କୁ କଣ କହିବ ?

ମୁଁ ଯେତେବେଳେ ଭଙ୍ଗୀଆ ବୋଉଙ୍କୁ ଧରି କହିଲି—"ହଁ। ଅପାଲେ ସେ ଘର ମାଲୁଣି ଘରି ସିଆଣା ।"—

ଭଙ୍ଗୀଆ ବୋଉ ଆଉ ସମ୍ଭାଳି ହୋଇ ପାରିଲେ ନାହିଁ । ଜୋର ଜୋର କରି ହସି ଦେଲେ । ମୁଁ ମନେ ମନେ ପ୍ରମାଦ ଗଣିଲି । ଭଲ ଲୋକରେ ଖଣ୍ଡିଆ ହେବା କଥା । ଏହା ଭିତରେ ମୋ' ମୁହଁରେ ନିଶ ଦେଖି ଗୋପାଳମାନେ ପ୍ରାଣ ବିକଳରେ ସବାଖ ଗୁଡ଼ ଦଉଡ଼ ପଳାଇ ଯାଇଥିଲେ । ଭଦ୍ର ଲୋକଟି ଗୋପାଳ ପଛେ ପଛେ ଅଣନିଶ୍ୱାସୀ ହୋଇ ଦଉଡ଼ ପଳାଇଥିଲେ । ଖାଲି ଭଦ୍ର ଲୋକଙ୍କ ପାଟିରୁ ଶୁଭୁଥିଲା—"ମୋ' ଟଙ୍କା, ମୋ' ଟଙ୍କା" ମୁଁ କହୁଥିଲି—"ଟଙ୍କା ନେଇଯାଅ, ନେଇଯାଅ ।" ଭଦ୍ରଲୋକ ଆଉ ଫେରି ନ ଥିଲେ । ବଲୁଆ ଭଳି ଖାଲି ରହି ରହି ପଛକୁ ଅନାଉଥିଲେ । ସେଇ ଦିନଠୁ ପ୍ରତି କଥାରେ ମୋତେ ଭଙ୍ଗିଆ ବୋଉ କହନ୍ତି—"ଦୁନିଆଁରେ ଏତେ ଲୋକ ଅଛନ୍ତି, ମାତ୍ର ତୁମ ଭଳି ଗୋଟିଏ ଲୋକ କେଉଁଠି ଦେଖୁନାହିଁ ।

# ଦାମ୍ପତ୍ୟ କଳହଶ୍ଚୈବ

ଶ୍ରୀମତୀ ଶୈବାଳିନୀ ଦେବୀ ନୂଆ ପାନ ଖାଇ ଶିଖୁଛନ୍ତି । ସେ ପାନଖାଇଲେ ତାଙ୍କ ପାଟିକୁ ବେଶ୍ ମାନୁଛି । ସେ ହସିଲେ ଓଠରେ ତାଙ୍କର ରଙ୍ଗଣୀ ଫୁଲର ରଙ୍ଗ ଚହଟି ଉଠୁଛି । ସେ ଛ'ଟି ସନ୍ତାନର ଜନନୀ ହେଲେ ମଧ୍ୟ କୁଆଁରୀ କନ୍ୟାଭଳି ଦେଖାଯାଉଛନ୍ତି । ସେ ଗାଲରେ ପାନ ଖିଲେ ଗୁଞ୍ଜି ଆଡ଼ଚାହାଁଣୀ ଚାହିଁ ଟିକିଏ ମୁରୁକି ହସିଦେଲେ ପାଷାଣ ବି ତରଳି ଯାଉଛି ଆଜି ଯୁବକ ବଂଚିବେ ବା କେମିତି ?

ତେବେ—

ସେ ଆମ ଘରକୁ ବୋହୂ ହୋଇ ଆସିଲା ବେଳେ ପାନ ନାଆଁ ଶୁଣିଲା କ୍ଷଣି ଚମକି ପଡୁଥିଲେ । ଚତୁର୍ଥୀ ବାସୀ କ'ଣ ଘର ଘାଟ ପାଖରେ ପାଖରେ ବସି ସରୁ ଓଢ଼ଣା ଟାଣି, ଶାଶୁ ରତ୍ନମଣି ଦେବୀଙ୍କ ପାଇଁ ଏକାଥରକେ ତିରିଶଖଣ୍ଡ ପାନର ଗୁଆ ଭାଙ୍ଗୁ ଭାଙ୍ଗୁ ପାଖରେ ବସି ଅଣ୍ଟା, ପରିହାସରେ ରହିଥିବା ଗେଲି, ଫୁଲି, ଡଲି, ଜେଲି, ଶେଲିଙ୍କୁ ତାତ୍ତ୍ୱିକ ପରାମର୍ଶ ଦେଇ ପାନ ନ ଖାଇବାକୁ ବୁଝାଉଥିଲେ ।

ପାନ ଖାଇଲେ—

ପାଇରିଆ ହୁଏ, ପାନ ଗୁଣ୍ଡିରେ ଥିବା ନିକୋଟିନ ବିଷ ବାଜି ଅନ୍ତଃସ୍ଥଳୀରେ କ୍ୟାନସର ହୁଏ ବୋଲି ତାଙ୍କର ମତକୁ ପ୍ରତିଷ୍ଠିତ କରୁଥିଲେ । ପାନ ଖାଇ ଛେଳପାଟି ଭଳି ପାଟିକୁ ବୁଲାଇ ନଦେଇ ପିଣ୍ଡରେ ପାଣି ଦେଲେ ବଡ଼ବଡ଼ୁଆ ପିତୃପୁରୁଷ—ଅନ୍ଧନର୍କରେ ପଡ଼ନ୍ତି ବୋଲି ମନ୍ତବ୍ୟ ବାଢ଼ୁଥିଲେ ।

ବିଦୁଷୀ ବୋହୂଙ୍କର ଏତାଦୃଶ ଉପଦେଶରେ ଶଶୁର ସ୍ୱୟମ୍ଭୂ ସାଆନ୍ତର ନିଜକୁ କୃତ୍ୟ କୃତ୍ୟ ମନେ କରୁଥିଲେ । ସେ—ପୁଅ ଝିଅଙ୍କୁ

ତାଙ୍କ ନିର୍ଦ୍ଦେଶ ଦେଇ କହୁଥିଲେ—"ବୁଝିଲ ପିଲେ, ନୂଆବୋଉ, ଯାହା କହୁଛନ୍ତି—ତାଙ୍କ କଥା ମାନି ଚଳିବ ।"

ପୁଅ ଝିଅ ଦୁହେଁ ସମସ୍ୱରରେ ଏକାଥରକେ ଉତ୍ତର ଦେଉଥିଲେ—"ହଁ ବାପା" ।

"—ହଁ ବାପା ।" ଶାଶୁ ରତ୍ନମଣି ଦେଵୀ କହିଲେ—"କେମନ୍ତ, ମୁଁ କ'ଣ ତା' ହେଲେ ଏ ଘରର ଘାସ କାଟୁଣୀ ? ପୋଇଲି ? ଦେଖିବ ବାଜଏ । ବୋହୂ କେମିତି ପାନ ନଖାଇବ ?"

ଦୁଇଜଣଙ୍କର କଳି ହେଲେ ତୃତୀୟ ପକ୍ଷର ଲାଭ । ଶାଶୁ ଶଶୁରଙ୍କ ଭିତରେ ଦାମ୍ପତ୍ୟ କଳହଃ ଶୈତ୍ୟବର ସୂତ୍ରପାତ ହେଲା ।

ଅନ୍ୟ କଥାରେ କହିଲେ—

ମହାଭାରତ ଯୁଦ୍ଧର ଆରମ୍ଭ ହେଲା ।

ଦେଖା ଯାଉ ।

କିଏ ଜିତୁଛି – କିଏ ହାରୁଛି ।

ସମସ୍ତେ ସମସ୍ତଙ୍କର ଦଳ ଠିକ୍ ରଖିବାକୁ ଚାହାନ୍ତି । ସମସ୍ତେ ସମସ୍ତଙ୍କର ଉତ୍ତରାଧିକାରୀ ବାଛିବାକୁ ଉଦ୍ୟତ ହୁଅନ୍ତି । ଚୋର ତା' ଦଳକୁ ସଜାଡେ । ସାଧୁ ତା' ସମାଜ ଠିକ୍ ରଖେ । ନେତା ତା' କଥାର ହାତ ଚେଲାଙ୍କୁ ଆୟତ୍ତ କରି ରଖେ । ଦେଶସେବୀ ତା' ଅନୁସରଣକାରୀଙ୍କୁ ଅନୁପ୍ରେରଣା ଦିଏ । ଗୁରୁ ତା' ଶିଷ୍ୟଙ୍କୁ ଦେଖେ ।

ସେଇମିତି—ଶାଶୁ ରତ୍ନମଣି ଦେଵୀ ଜଣେ ସାମାନ୍ୟ ମହିଳା ନୁହଁନ୍ତି । ସେ ଯାହା ବୁଝିଥିବେ ସେୟା । ଅନ୍ୟାୟ ଦେଖିଲେ । ସେ ସ୍ୱାମୀ ହେଉ, ପୁତ୍ର ହେଉ, ନିଜର ଭାଇ ହେଉ, ବନ୍ଧୁ ବାନ୍ଧବ ହେଉ ଝିଅ ହେଉ ଜ୍ୱାଇଁ ହେଉ, କାହାରି ଗତି, ଗୋଟି ଠିକ୍ ରଖନ୍ତି ନାହିଁ ତାଙ୍କୁ ସମସ୍ତଙ୍କର ଡର ।

ସେ ଆଜି ନୁହଁ – ଅଧିଆଡି ବେଳୁ ଭରି ପାନ ଖାଆନ୍ତି । ଦାନ୍ତଗୁଡ଼ିକ ତାଙ୍କର ଦୂରରୁ ଦେଖି ପାଚିଲା ଖଜୁରିକୋଳି ଭଳି ଦେଖାଯାଏ ।

ତାଙ୍କୁ ପାନଖିଆ ଛଡ଼ାଇବା ପାଇଁ ବହୁଲୋକ ଚେଷ୍ଟା କରିଛନ୍ତି—କହୁ ଝିଉଝିଆରି ଅବଧାନ ହୋଇଛନ୍ତି ମାତ୍ର କିଛି ଫଳ ହୋଇନି । ବାଡ଼ ଭାଙ୍ଗିଛି । ସେ ଫଣା ଟେକା ଗୁଡ଼ି ନାହାନ୍ତି ।

ପଙ୍କ୍ତିରୁଲଶ ପୂର ତାଙ୍କୁ ଛପ୍ପନଲଶ ଗୃଲଲ ।

ବାପଘର ତାଙ୍କର ପାନର ସବୁ ଆନୁସଙ୍ଗିକ ଖର୍ଚ୍ଚ ତୁଲନ୍ତ ।

ସଦ୍ଧ—ରତ୍ନମଣିଙ୍କ ସ୍ୱାମୀ ପାନଖାଇବା ନେଇ କେବେ ବିରକ୍ତ ହୁଅନ୍ତ—

ତେବେ—ରତ୍ନମଣିଙ୍କ ଶାଶୁ ଶଶୁର କହନ୍ତ—"ସେ ତ ତା' ବାପଘରୁ ଆଣି ଖାଉଛି, ତୋର ସେଥିରେ କ'ଣ ଅଛି ?"

ସ୍ୱାମୀ ଜୋକ ମୁହଁରେ ଲୁଣ ଦେଲାଭଳି ଚୁପ୍ ହୋଇ ରହନ୍ତ ।

ଅବଶ୍ୟ—ରତ୍ନମଣି ଦେବୀ ବୋହୂପଣିଆ କଲା ବେଳଠାରୁ ଏ ବେଳ ଆକାଶ ପାତାଳ ତଫାତ ।

ସେତେବେଳେ ଥିଲା—ପାନ କଡ଼ାକ ପଇସାଏ । ଗୁଆ ସେରକ ଆଠଅଣା । ମୋଷ୍ଟହାର ଛଟାଙ୍କିକ ଅଧଲାଏ । ସେ କାଳ କ ଆଜ ଅଛି ?

ଯାହାହେଉ—ଶୈବାଳନୀ ଦେବୀ ଯେତେବେଳେ ଶାଶୁଙ୍କ ପାଇଁ ପାନ ଭାଙ୍ଗି ବସନ୍ତ—ସେତେବେଳେ ଶାଶୁ ରତ୍ନମଣି ଦେବୀ ଗେହ୍ଲେଇ ହୋଇ କହନ୍ତ—"ମା' ତୁ ଟିକେ ପାନ ଖାଉନୁ ?"

ଶୈବାଳନୀ ଓଡ଼ଣାକୁ ଟାଣୁ ଟାଣୁ ମୁଣ୍ଡ ହଲାଇ ମୁରୁକି ହସି କହନ୍ତ—"ନା, ମୋ' ମୁଣ୍ଡ ବୁଲାଇବ ।"

ଶାଶୁ ଯୁକ୍ତି ବାଢ଼ି କହନ୍ତ—"ଏତେ ଟିକଏ—ଟିକଏ ପିଲା ପ ନ ଖାଉଛନ୍ତ ତୋ'ର ମୁଣ୍ଡ ବୁଲାଉଛି କ'ଣ ? ପାନଟା ଦେହ ପକ୍ଷରେ ଭାରି ହିତ । ହଜମ କରେ । ମୁଖନେ ସୁଗନ୍ଧ ଭରେ । ମୁଖରେ ପ୍ରସନ୍ନତା ଆଣେ ।"

ଶୈବାଳନୀ ଦେବୀ ଗୁରୁ ଗୁରୁଜନଙ୍କୁ ଓଲଟ ଜବାବ ଦେବାକୁ ଭଲ ମନେ କରନ୍ତ ନାହିଁ । ତଥାପି କଥା ସାଙ୍ଗକୁ କଥା ନ କହିଲେ ଚଳିବ କେମିତି ?

ଶୈବାଳନୀ କହନ୍ତ—"ମେଳା, ପୂଜାର ଅସ୍ଥାନ ଉପରେ ଯେମିତି ବଡ଼ଆ ପାନ ଥୁଆ ହୁଏ—ସେମିତି ପାନ ଖାଇବାଟା ଭଲ । ବୋଟେ ଗୁଆ ଗୁଣ୍ଡି ଦେଇ ପାନଖାଇବା ଆଦୌ ଭଲ ନୁହେଁ ।

ଶାଶୁ ତତ୍‌କ୍ଷଣାତ୍ କହନ୍ତ—"ହେଉ, ଏବେ ତୁ' ବଡ଼ଆ ଖାଉନୁ ?"

ଶୈବାଳମା ମଥା ପୋତି ତଳକୁ ନଖରେ ନଖାର ନଖାର ହସି ହସି ମୌନେ ସମ୍ମତି ଜଣାନ୍ତି ।

ଶାଶୁ ରତ୍ନମଣିଙ୍କ ଗୁଡ଼ି କୁଣ୍ଢେ ମୋଟ ହୋଇଥାଏ । ସେ ସ୍ନେହାତି-ଶଯ୍ୟରେ ପୁଣି କହନ୍ତି—"ଦେଖ, ତୁ ଯଦି ପାନ ନ ଖାଉ, ମୁଁ ପାନ ଗୁଡ଼ି ଦେବ ।"

ଶୈବାଳମା ଭାବନ୍ତି—"ଏ କେମିତି କଥା । ବୁଢ଼ୀ ଲୋକ । ମୋ ପାଇଁ କାହିଁକି ପାନ ଗୁଡ଼ି ଦେବେ ? ଏତେ ସ୍ୱାର୍ଥ ତ୍ୟାଗ କରିବେ ? ଲୁହ ନ କାଢ଼ି ରକ୍ତ କାଢ଼ିବେ ? କାଳେ ଅଧର୍ମ ହେବ ? କାଳେ ମୋ ପିଲାମାନଙ୍କ ଉପରେ ପଡ଼ିବ ?"

ଶୈବାଳମା ପାନ ଖାଇଲା ।

ମଞ୍ଜିଆଡି ନାଇ ନଖ ପଗ୍ରଇଲା ଭଳି ପାନଖାଇ ଓଠ ପଗ୍ରଇଲା ।

ଏହା ଏକ ସଂକ୍ରାମକ ରୋଗର ରୂପ ନେଲା ।

ଦେଖା ଶିଖା ଓଡ଼ିଶା ।

ଶୈବାଳମାକୁ ଦେଖି ଦେଖି ଅଞ୍ଜଳି ପାନଖିଆରେ ସମସ୍ତଙ୍କୁ ବଳିଲା ।

ନୂଆ ନାଚଲା ବାଳର ଗୋଡ଼ ଠିକ୍ ତାଳରେ ନ ପଡ଼ିଲା ଭଳି, ନୂଆ ଚାଲି ଶିଖୁଥିବା ପିଲାର ଗୋଡ଼ ଏଠି ସେଠି ପଡ଼ିଲା ଭଳି, ନୂଆ ବ୍ରହ୍ମା ବିଷ୍ଣୁ ମହେଶ୍ୱର ମଡ଼ାଉଥିବା ଗୃହ କାନ୍ଥରେ ତାର ପୁନରାବୃତ୍ତିକଲା ଭଳି—ତାମ୍ବୁଳ ସେବନରେ ଅନଭ୍ୟସ୍ତା ଅଞ୍ଜଳି କାନ୍ଥସାରା ପ ନପିକ ଗୁଡ଼ିବାକୁ ଲାଗିଲା ଯାଇଘରର ସବୁଆଡ଼େ ପାନଖଦଡ଼ କାଢ଼ିଲା ।

ଅଞ୍ଜଳି ଅଡ଼ୁଆଡ଼ୀ ଝିଅ, ତାକୁ ସିନା ଚଉଖୁଣ ମାଫ,

କିନ୍ତୁ—

ଶୈବାଳମା ?

ସେ କ'ଣ ଆଉ ପିଲା ହୋଇ ଅଛି । ଛ'ଟି ପିଲାର ମା' ହେଲାପରେ ତାକୁ ଆଉ କିଏ କ୍ଷମା କରିବ ? ପାନଖାଇ ଯେତେବେଳେ ଶୋଷେଇ ଘରେ ପଶିଲା, ଶାଶୁ ରତ୍ନମଣି ଦେବୀଙ୍କ ଚେତା ପଶିଲା । ଦେଖେଇ ଦେଖେଇ ନାନା କଥା କହିଲେ ।

ମାତ୍ର—ଶୈବାଳମା ଶୁଣୁଛି କେଉଁଠି ?

ଅବସ୍ଥା ଏମିତି ହେଲା ଯେ—ବୋହୂ ଝିଅଙ୍କ ଦାଉରେ ଶାଶୁ ରତ୍ନମଣି ଦେବୀ ପାନ ଗୁଡ଼ି ଦେବାକୁ ପ୍ରତିଜ୍ଞା କଲେ ।

*

କିନ୍ତୁ—

ପାନ ଛାଡ଼ି ପାରୁଛନ୍ତି କେଉଁଠି ।

ପାନ ତାଙ୍କର ଜୀବନ । ଭାତ ନଖାଇ ସେ ଦଶ ଦିନ ରହିପାରିବେ ମାତ୍ର ପାନ ନଖାଇ ଦଶ ମିନିଟି ଚଳି ପାରିବେ ନାହିଁ ।

ଏଥିର ସେ ଅନୁତାପ କଲେ ନିଜ ଦୋଷ ନିଜେ ବୁଝି ପାରିଲେ ।

"ଆପଣାହସ୍ତେ ଜିହ୍ୱାଚ୍ଛେଦ

କେ ତାର ଅଛି ପ୍ରତିବାଦ ।"

ଅଞ୍ଜଳିର ବିବାହ ଲାଗିଲା । ଯେ ଆସି ଦେଖିଲା ସେ ମୁହଁ ମୋଡ଼ି ଚାଲିଗଲା । ରତ୍ନମଣି ଦେଖି କାନ୍ଦିଲେ । ମୁଣ୍ଡ ବାଡେଇଲେ । ଲୋକ ଦେଖାଣିଆଗ୍ରହରେ ଅଞ୍ଜଳି ପାନ ଛାଡିଲା ।

ଇନ୍ଦୁଭୂଷଣ ନାମକ ଜଣେ ଡାକ୍ତରଙ୍କ ସହିତ ଅଞ୍ଜଳିର ବିବାହ ହୋଇଗଲା ! ଇନ୍ଦୁଭୂଷଣ ପ୍ରଥମ ସାକ୍ଷାତବେଳେ ପାନ ନ ଖାଇବାକୁ ଦେହ ଛୁଆଁଇ ଅଞ୍ଜଳିକୁ ନିୟମ କରାଇଲେ ।

ଯାହା ଥରେ ଅଭ୍ୟାସରେ ପଡେ ତାକୁ ଛାଡ଼ିବା କ'ଣ ଏତେ ସହଜ ! ଇନ୍ଦୁଭୂଷଣ ଡାକ୍ତରଖାନାକୁ ଚାଲିଗଲାପରେ ଅଞ୍ଜଳି ଚାକରକୁ ପଠାଇ ପାନ ଗୁଆ ଗୁଣ୍ଡି ବଜାରରୁ ଆଣେ ! ଦି' ଚାରି ଖଣ୍ଡ ଖାଏ ।

ଯାହା ଗୁଆ' ଗୁଣ୍ଡି ବଳେ ତାକୁ ଗୋଟିଏ ହାଣ୍ଡି ତଳେ ଲୁଚେଇ ରଖି ଦିଏ । ଯୋଗକୁ ବ୍ରହ୍ମା ଖଟେ ନାହିଁ ।

ଦିନେ ଗୋଟିଏ ଗୋଖର ସାପ ଘର ଭିତରକୁ ପଶି ଆସି ଫଅଁ ଫଅଁ ଗର୍ଜନ ଛାଡ଼ିଲା । ଇନ୍ଦୁଭୂଷଣ ଉପରେ ଥର ହର ହୋଇ ଗୋଟିଏ ବାଉଁଶ ଠେଙ୍ଗାରେ ଯେତେବେଳେ ପାହାରେ ପକାଇଲେ ସେତେବେଳେ ସାପଟି ତ ମଲା—ହାଣ୍ଡି ଭାଙ୍ଗିଗଲା । ସେ ସଦ୍ୟ କଣା ହୋଇ ଥୁଆ ହୋଇ-ଥିବା ପାନ, ଗୁଆ, ଗୁଣ୍ଡି ଦେଖିଲେ ।

ଥରେ ଅଞ୍ଜଳି କି ଚାହିଁଲା । ଆଉ ଥରେ ପାନ, ଗୁଆ ଗୁଣ୍ଡିକୁ ଚାହିଁଲେ କ୍ରୋଧରେ ଅନ୍ତର ତାଙ୍କର ଥର ଉଠିଲା । ଅବିଶ୍ୱାସରେ ବୁଝିଗଲେ ସେ । ଅଞ୍ଜଳି ନିଜର କୃତକର୍ମ ପାଇଁ କ୍ଷମା ମାଗି ଯେତେ—କୈଫିୟତ ଦେଲେ ମଧ୍ୟ ଇନ୍ଦୁଭୂଷଣ କିଛି ଶୁଣିଲେ ନାହିଁ ।

ଏବେ ପୁ ତୁଣା ରୋଗିଣୀ ପରି ଅଞ୍ଜଳି—ବାଇଦ ପାଲଟି ଉପଦେଶ ଦେଇ କହେ—ପାନପ୍ରିୟ ସମସ୍ତେ ସାବଧାନ "ପାନ ଗୁଆ ଗୁଣ୍ଡି ଗୋଟିଆ ନିଶା, ଅଜାଣତରେ ଟାଣେ ପଇସା ।"

●

# ନିର୍ବାଚନ ଇସ୍ତାହାର

ସେ ଦିନ ମକର ସଂକ୍ରାନ୍ତି ।

ସକାଳୁ କୁହୁଡ଼ିରେ ମୁହଁକୁ ମୁହଁ ଦେଖାଯାଉ ନଥାଏ । ଶୀତରେ ବି ଦେହ ଠକ୍ ଠକ୍ ହୋଇ ଯାଉଥାଏ ।

ତଥାପି—

ଅଂକୁର ଭାରି ଫୁର୍ତ୍ତି ।

ତରତର ହୋଇ ଦାନ୍ତ ଘଷିପକାଇ, ଶୁଖୁଆ ପୋଡ଼ାରେ ଲଙ୍କାମରିଚ ଦଳି, କଂସାଏ ପଖାଳଭାତ ଉଦରକୁ ନିକ୍ଷେପିଦେଲା । ହାତ ଧୋଇସାରି ତିନଥର ନିଶକୁ ସାଉଁଳେଇଲା ।

ତା'ପରେ—

ସଂଗ୍ରାମ ପାର୍ଟି ନିର୍ବାଚନ ଦାୟିତ୍ୱରେ ଥିବା ନେତା ବୈଶ୍ୱରଞ୍ଜନ ବଳିଆର ସିଂହଙ୍କଠାରୁ ଆସିଥିବା "ଏକାନ୍ତ ଗୋପନୀୟ" ଚିଠି ଖଣ୍ଡିକ ପଢ଼ୁ ପଢ଼ୁ, ପିଠିରେ ବାଆଁ ହାତରେ ଚାଳମାରି, ମୁଣ୍ଡ ହଲାଇ ହଲାଇ ହସି ଉଠିଲା ।

ହସ ବୋଇଲେ ଏକଦମକା ମନଖୋଲା ହସ । ଏମିତି ହସ ଅଂକୁର ଆଉ ଜୀବନରେ କେବେ ହସି ନଥିଲା । ମନେ ହେଉଥିଲା, ଅଂକୁର ହସରେ ଭାଙ୍ଗି ପଡ଼ିବ ଯେମିତି ଘରର ମଥାନ । ଉଡ଼ିଯିବ ଛପରର ଛଣ ।

ଅଂକୁର ଭୂଆସୁଣୀ ରଙ୍ଗବସ୍ତା ଗଦା କାଖେଇ, ଝୁଣ୍ଟିଆ ଝୁମୁଝୁମୁ କରି ନଈ କୂଳକୁ ଚାଲିଗଲାବେଳେ କହୁଥିବାର ଶୁଣାଯାଉଥିଲା—"ଆଜି ଏକ ଶୀତରେ ରୈବବସନ୍ତ ।"

ଘର ଆଗ ପଡ଼ିଆରେ ବି ଘସି ପାରୁଥିଲା ଅଙ୍କୁର ମା' ଗେହ୍ଲେଇ । ସେ ପୁଅର ଅଦିନିଆ ଦମକାହସ ଶୁଣି ଦଉଡ଼ିଆସି ପଚାରିଲା—

—"ଅଙ୍କୁର,

ଅଙ୍କୁର କହେ, ତୋ'ର ଆଜ କ'ଣ ହୋଇଛି ? ଏମିତି ହସୁଛୁ କାହିଁକି ?"

ଅଙ୍କୁର ମା'ର କଥା ଶୁଣି ହସିଲା—ଆହୁରି ହସିଲା । ଶଠି କଥାଟାକୁ ନକହି ମା'କୁ ଭୁଲାଇଦେଇ କହିଲା—"ବୋଉଲୋ, ତୋତେ କ'ଣ ଆଉ କଉ ନାଆଁ ମିଳିଲା ନାହିଁ, ମୋ' ନାଆଁଟା ଦେଲୁ ଅଙ୍କୁର । ଭଲ ନାଆଁ ଗୋଟା ଦେବାକୁ ତୋ' ସତ କ'ଣ ବଳିଲା ନାହିଁ ? ନା— ପଇସା ପଡ଼ୁଥିଲା ? ମୋତେ ବର୍ତ୍ତମାନ କେତେ ଅସୁବିଧା ହେଉଛି । ମୁଁ ଯଦି ମନ୍ତ୍ରୀହୁଏ କେମିତି କ'ଣ କରିବ ? ବାପ ମା'ହୋଇ ଯଦି ଭଲ ନାଆଁଟିଏ ଦେଇ ପାରିବ ନାହିଁ, ତେବେ ପିଲା ଜନ୍ମକରିବାର ତୁମର କି ଅଧିକାର ?

ଦୁନିଆରେ ପଦ୍ମଲୋଚନ, ଗଜେନ୍ଦ୍ର, ଶକ୍ତିଧର, ବିଶ୍ୱମୋହନ ପ୍ରଭୃତି ଅସଂଖ୍ୟ ପ୍ରଥମ ଶ୍ରେଣୀର ନାଆଁ ଥାଉଁ ଥାଉଁ ପଚୁ, ଗନ୍ଧିଆ, ହଗୁର, ଙ୍କର ଭଳି ଶ୍ରୁତିକଟୁ ଅଙ୍କୁର ନାଆଟି ଦେଇଦେଲୁ !"

ଅଙ୍କୁର ମା' ପାଟିରୁ ଠିଙ୍କାଟାକୁ ଫୋପାଡ଼ିଦେଇ, ଅଣ୍ଟାରେ ବଡ଼ବାଗୀ ନାଲିକନ୍ତାକୁ ଗୁଡ଼େଇ ଦେଇ, ନାକରେ ବସିଣିକି ଟେକ ଦିଙ୍କାଣୀ ପୋଛୁ ପୋଛୁ କହିଲା—

—"ଆରେ ଅଙ୍କୁର, ଗାଲ ଚିପିଦେଲେ ତୋର ଦୁଧ ବାହାରିବ, ତୁ ପୁଣି ମୋତେ ପାଠ ପଢ଼ାଉଛୁ ? ଅଙ୍କୁର କ'ଣ ଏମିତି ଗୋଟାଏ ଖରାପ ନାଆଁ ? ଆମେ ଏବେ ଶ୍ରଦ୍ଧାରେ ଡାକୁଛୁ ଅଙ୍କୁର ।

ମୁଁ କ'ଣ ପାଠ ପଢ଼ିନବୋଲି ଦେଖୁନ ନା ଜାଣୁନ ? ଆମ ଦେଶରେ ଯିଏ ଜନ୍ମରୁ ଅନ୍ଧ—ତାକୁ ଡାକନ୍ତି ପଦ୍ମଲୋଚନ । ଯାହାର ଅଖିମୁଠି ନେବାକୁ ବାଡ଼ି ଗୋଡରେ ଗୋଡେ ନଥାଏ, ତା'ର ନାମ ହୁଆନ୍ତୁଏ ଗଜେନ୍ଦ୍ର । ଯିଏ ସଞ୍ଜହେଲେ, ବିଲୁଆ ଭୁକିଲେ ଘରକଣରେ ବସି ଉପରେ ଗୁଡିରେ ଡିଳନଣ୍ଡା ଛେପ ପକାଏ—ସେ ବୋଲାଏ ଶକ୍ତିଧର । ଯାର କୁତ୍ସିତ, କଦାକାର ରୂପକୁ ଦେଖିଲେ ଲୋକେ ଘୃଣାରେ ନାକ ଟେକନ୍ତି ତାକୁଡ଼ି କୁହାଯାଏ ବିଶ୍ୱମୋହନ । ଦେହରେ ଗୁଣଥିଲେ ସିନା ସମସ୍ତେ ଧନ୍ୟ ଧନ୍ୟ କହନ୍ତି । କା ନାଆଁକୁ କ'ଣ କିଏ ସୋରବାଟି ଖାଇବ ।"

ଅଙ୍କୁର ଏଥର କହିଲା—"ବୋଉଲୋ, ଆଜି ଆମ ବଡ଼ନେତା ବୈଶ୍ୱରଞ୍ଜନ ବଳିଆରସିଂହ ମୋ' ପାଖକୁ ଆସିବେ । ଭୋଟ ବିଷୟରେ ଆଲୋଚନା ହେବ । ସେ ଆମଘରେ ଥିଲାବେଳେ ତୁ' କିମ୍ବା ବାପା କେହି ମୋତେ ଅଙ୍କୁର ବୋଲି ଡାକିବ ନାହିଁ ।"

ଅଙ୍କୁର ମା' କହିଲା—"ହେଉ ।",

ଅଳ୍ପ ସମୟ ପରେ—

ବୈଶ୍ୱରଞ୍ଜନବାବୁ ଗୋଟିଏ ଜିପରେ ଆସି ପହଞ୍ଚିଲେ । ତାଙ୍କ ସାଙ୍ଗରେ ପାଞ୍ଚ ସାତଜଣ କୁଞ୍ଚ କୁଞ୍ଚିଆ, ମାଗୁରୁ ଢଣିଆ, ଥାକୁଲ ପୁଞ୍ଜିଆ, ଝେଲକଣ୍ଟିଆ, ଅନ୍ତଲ୍ ପେଟା ଆସିଥିଲେ । ଏମାନେ ସମସ୍ତେ ପଞ୍ଚପେଲା । ପ୍ରତ୍ୟେକେ ଜଣେ ଜଣେ ଦୁର୍ନୀତିର ବରୁଣେଇ ପାହାଡ ।

ଗୁଡ଼ଜଳରେ ଗୋଡ଼ି ମିଶାଇ, ଘିଅରେ ଆଳୁମଣ୍ଡ ଫେଣ୍ଟି, ଚାଉଳରେ ହାଡଗୁଣ୍ଡ ମିଶାଇ, କିରାସିନରେ ପାଣି ପୂରାଇ, ନିଶା ନିବାରଣ ନାମରେ ବିଲାତି ମଦ ବିକି, ଚୋରା କାରବାରରେ ସାର ଗୁଳାଣ କରି, ଲକ୍ଷ ଲକ୍ଷ ଟଙ୍କାର ଅଧିକାରୀ ହୋଇଛନ୍ତି, ଭୋଗ ବିଳାସରେ ଧରାକୁ ସରା ମଣୁଛନ୍ତି । ନିର୍ବାଚନ ପାଣ୍ଠିକୁ ମୋଟା ଚାନ୍ଦା ଦେଇ, ସବୁଦଳର ନେତାଙ୍କ ମୁହଁ ବନ୍ଦ କରି ଏଘର ମାଉସୀ, ସେଘର ପିଉସୀ ସାଜନ୍ତି । ପ୍ରିୟାପ୍ରୀତି ତୋଷଣରେ ସବୁ ସୁବିଧା ସୁଯୋଗ ଉପଭୋଗ କରନ୍ତି । ଏମାନେ ମୁହଁରେ ଗଣତନ୍ତ୍ରର ଜୟଗାନ ଗାଇ ସବୁ ଅଗଣତାନ୍ତ୍ରିକ କାର୍ଯ୍ୟରେ ଲିପ୍ତ ରହନ୍ତି ।

ଏମାନେ ପୁଣି ହେବେ ନିର୍ବାଚନରେ ପ୍ରାର୍ଥୀ ? ଜନତାର ପ୍ରତିନିଧି ? ଏମ୍. ଏଲ୍. ଏ., ଏମ୍. ପି ଗଣତନ୍ତ୍ରର ରକ୍ଷକ ମନ୍ତ୍ରୀ ? ଦେଶକୁ ଘିଅ ମହୁରେ ଭସାଇ ଦେବାର ନିଷ୍ଫଳ ପ୍ରତିଶ୍ରୁତି ଜନସାଧାରଣଙ୍କୁ ଦେବେ । ଭୋଟ ଗଣତି ବାସିଦିନ ଆଉ କାଣିଆ କଏ ନା କପିଳା କଏ ?

ଅଙ୍କୁର ପୁଣି ଗୋଟାଏ ଲୋକ, ଯା' ହାତରୁ ଡକାପୂତି ଅଭିଯୋଗରେ ପିନ୍ଧିଥିବା ହାତକଡ଼ାର ଚିହ୍ନ ଲିଭିନାହିଁ, ତାପାଖକୁ ଦଉଡ଼ି ସଂଗ୍ରାମ ପାର୍ଟିର ମୁଖ୍ୟ ନେତା ଅନୁରୋଧ କରୁଛନ୍ତି ନିର୍ବାଚନରେ ପ୍ରାର୍ଥୀ ହେବାକୁ ।

ବେଳ କ'ଣ ନ ହେଲା ସତେ ?

ଏଥର ବୈଶ୍ୱଗଞ୍ଜନ ବାବୁ ନିର୍ବାଚନ ଜଣିବାର ବହୁ ଗୁପ୍ତପରାମର୍ଶ ଦେବାପରେ ନିର୍ବାଚନ ଇସ୍ତାହାର ସମ୍ବନ୍ଧରେ ବୁଝାଇଲେ । ସମସ୍ତେ କରତାଳି ଦେଇ ସମର୍ଥନ କଲେ ବୈଶ୍ୱଗଞ୍ଜନ ବାବୁଙ୍କୁ ।

ଏତିକିବେଳେ ଅଙ୍କୁର ବାପା ଡାକିଲା—"ଅଙ୍କୁର ବାବୁ, ଟିକିଏ ଶୁଣିଗଲ, ଶୁଣିଗଲ ।"

ବୈଶ୍ୱଗଞ୍ଜନ ବାବୁ ପଚାରିଲେ—ସେ ଲୋକ ଜଣକ କିଏ ?

ଅଙ୍କୁର କହିଲା—"ସେ ଆମ ଗୃହକର ।"

ଅଙ୍କୁର ବାପା ଏକଥା ଶୁଣି ରାଗରେ ନିଆଁବାଣ ହୋଇ କବାଟ ବାଡ଼େଇ, କଂସାଥାଳି ଫୋପାଡ଼ି କହିଲା—"ଶଳା ଟୋକା ମୋତେ ପୁଣି କହୁଛି ମୁଁ ଏ ଘରର ଗୃହକର ?"

ଅଙ୍କୁର ମା' କହିଲା—"ମୁଁ ପରା ତୁମକୁ କହିଥିଲି, ସେ ମନାକରିଛି ତାକୁ ତୁମେ ଆଉ ଅଙ୍କୁର ଡାକିବ ନାହିଁ ।"

ଅଙ୍କୁର ବାପା ବୋଇଲା "ତାକୁ ତ ଅଙ୍କୁର ବାବୁ ଡାକିଲି ଆଉ କ'ଣ ତାକୁ ଡାକିବି ନବାବ ?"

ଅଙ୍କୁର ମା' କହିଲା—"ତାକୁ ତ ଅଙ୍କୁର କହିଲେ ସେ ଚିଡ଼ୁଛି, ଆମେ ଅଙ୍କୁର ବାବୁ କହିଲେ କ୍ଷତି କ'ଣ ?"

ଅଙ୍କୁର ବାପା କହିଲା—"ହେଉରେ ବାବୁ, ତୁମର ରାସ୍ତ ବଜାୟ ରହୁ ।"

ଅଙ୍କୁର ମା, କହିଲା—"ଦାଣ୍ଡବସା ପୁଅ । କାଲି ସକାଳେ ମନ୍ତ୍ରୀ ହେବ । ତା' କଥା ନ ମାନିଲେ କେମିତି ଚଳିବ ?

ଭୋଟ ସମ୍ବନ୍ଧରେ ଆଲୋଚନା ଶେଷକରି ବୈଶ୍ୱଗଞ୍ଜନ ବାବୁ ସଦଳ ବଳେ ବାହୁଡ଼ିଗଲେ ।

ଅଙ୍କୁର ଡାକିଲା—"ବୋଉଲେ ।"

ଅଙ୍କୁର ମା ଶ୍ରଦ୍ଧାରେ ସ୍ୱର ଲମ୍ବାଇ କହିଲା—"ଅ—ଅ—ଲେ"

ଅଙ୍କୁର କହିଲା—'ଦୂରରେ ନରିଆ ଅବଧାନ ପାଠି ଶୁଭୁଛି ତାକୁ ଟିକେ ଡାକ ଦିଏ ।"

ଅଙ୍କୁର ମା' ଚାଲିଗଲା ।

କୋହିନୁର ପ୍ରେସ ପାଞ୍ଜି ବାହାରିବା ସଙ୍ଗେ ସଙ୍ଗେ ଓଡ଼ିଶାରେ ଯେଉଁ କେତେଜଣ ଜ୍ୟୋତିଷ ବୋଲନ୍ତି, ତା' ଭିତରୁ ନରିଆ ଅବଧାନ ଜଣେ ।

ତଥାପି—ତଥାପି—

ସେଠି ବଜାରରେ ନରିଆର କାଟତି କମ୍ ନୁହେଁ । ଗଲା ନିର୍ବାଚନ ବେଳେ କର, କପାଳ, କୋଷ୍ଠି ବିଚାର କରି ଭଲ ଦି' ପଇସା ସେ ରୋଜଗାର କରିଥିଲା । ତେଣି ତା'ର ଆଦର ଜଣ ଭୂଆସୁଣୀମାନଙ୍କ ପାଖରେ । ଅଙ୍କୁର ନରିଆ ଅବଧାନକୁ ଦେଖି ଦେଖି କହିଲା—"ଦେଖିଲ ଦେଖିଲ ଅବଧାନେ ମୋ' ହାତ, ଏଥର ମୋର ମନ୍ତ୍ରୀ ହେବାର ଯୋଗ ଅଛି କି ନାହିଁ ?"

ନରିଆ ଅଙ୍କୁର ହାତକୁ ଅନାଇଁ ଦେଇ କହିଲା—"ଏଥର କଟେଇବାର । ହାଣ୍ଡି ସୁନା କଳସ ଢାଳିବା ନିଶ୍ଚିତ ।"

ଅଙ୍କୁର ଆନନ୍ଦରେ ଏଭଳି ବିଭୋରହୋଇଗଲା ଯେ, ହାତେ ଗୁଡ଼ିକ ଆଣି ନରିଆକୁ ଦେବାକୁ ଉଠିଗଲା । କଣ୍ଢରୁ ଗୁଡ଼ିକ ଆଣିଲାବେଳେ ଖଡ଼ ଖଡ଼ ଶୁଭିଲା । ଅଙ୍କୁର ଭୂଆସୁଣୀ ରଙ୍ଗବଣ୍ଟ ଖଡ଼ ଖଡ଼ ଶବ୍ଦ ଶୁଣି ବୋଷେଇ ଘର ଦୁଆରୁ ଝାଡ଼ୁଣୀ ମୁଠାଟା ଫୋପାଡ଼ି ଦାନ୍ତ କାମୁଡ଼ି କହିଲା—"ପୋଡ଼ାମୁହାଁ କୁକୁର, ତୋ'ର ଏତେ ସାହସ ତୁ' ଘରେ ପଶି କଣ୍ଢରୁ ଗୁଡ଼ିକ ଖାଇଲୁଣି—

ଝାଡ଼ୁଣୀ ମୁଠାଟା ଜୋରରେ ବାଜିଲା ଅଙ୍କୁର ମୁଣ୍ଡରେ । ସେ କହିଲା—"ଓଃ ମରିଗଲି ।"

ରଙ୍ଗଲତା ନିଜ ଗେରସ୍ତର ପାଟିବାର ଜିଭ କାମୁଡ଼ି ପକାଇ ଝାଡ଼ୁଣୀରୁ ଛ'ଖଣ୍ଡ ଛିଣ୍ଡାଇ ଛେପ ଥୁ' ଥୁ' କରି ଫୋପାଡ଼ି ଦେଲା । କେଡେ ଗଂଜି ହେଲା ମନେ ମନେ । ଗେହ୍ଲେଇ ହୋଇ ଆସି ଅଙ୍କୁର ମୁଣ୍ଡ ଆଉଁଷି ଆଉଁଷି କହିଲା—"ଘରେ ଆମେ ଏତେ ମଣିଷ ଥାଉଁ ଥାଉଁ ତୁମେ କାହିଁକି କଣ୍ଢରୁ ଗୁଡ଼ିକ ନେଉଥିଲେ ? ମୁଣ୍ଡରେ ସିନା ବାଜିଲା, ଆଜି ଯଦି ଅଥାନ ଥାନରେ ବାଜି ଥା'ନ୍ତା ?"

ଅଙ୍କୁର କହିଲା, ସେଥିପାଇଁ ମୋର ମନ କଷ୍ଟ ନାହିଁ । ସୁଖ ଆସିବା ଆଗରୁ ଦୁଃଖର ଛାଇପଡ଼େ ।

ନରିଆ ଅବଧାନ ଗଣ୍ଠିଲି ଭର୍ତ୍ତି କରି ଚାଲିଗଲା ।

ଅଙ୍କୁର କହିଲା—"ହେ ଶୁକୁଟା ବୋଉ, ଶୁଣିଲଣି ନା, ମୁଁ ମନ୍ତ୍ରୀ ହେବି ।

ରଙ୍ଗଲତା କହିଲା—"କ'ଣ କହୁଛ ? ମୋ' ମୁଣ୍ଡ ଖାଅଛି । ସତେ ତୁମ ତୁଣ୍ଡ ସୁତୁଣ୍ଡ ହେବ । ହେ ମା' କଟକଚଣ୍ଡୀ, ମୁଁ କଳାଶାଢ଼ୀ ଦେବ । ହେ ପ୍ରଭୁ ଆଖଣ୍ଡଳମଣି, ମୁଁ ତୁମ ମେଳା କରିବ । ହେ ବାବା ଧବଳେଶ୍ୱର, ମୁଁ ତୁମ ମୁଣ୍ଡରେ ଲକ୍ଷେ ଚମ୍ପା ଚଢ଼ାଇବ । ସତେ ଶୁକୁଟା ବାପା ମନ୍ତ୍ରୀ ହେବେ ?"

ଅଙ୍କୁର କହିଲା—"ତୁମେ ଇଚ୍ଛା ନ କଲେ କିଛି ହୋଇ ପାରିବ ନାହିଁ ।"

ରଙ୍ଗଲତା କହିଲା—"ହଉ, ମୋ'ଠାରେ ପୁଣି କ'ଣ ଅଟକିଛି ?"

ଅଙ୍କୁର କୃତ୍ରିମରେ ଆଖି ଛଳ ଛଳ କରି କହିଲା—"ଭେକ ନଥିଲେ ଭିକ ମିଳେନାହିଁ । ଆଜ ପ୍ରାର୍ଥୀପତ୍ର ଦାଖଲ ହେବ । ମୁଁ ଯିବି କେମିତି ?"

ରଙ୍ଗଲତା କହିଲା "ଏଇ କଥା ତ ? ଗହଣାଥାଇ କ'ଣ ମୋର ପାଣି ହଉଥିବ ।" ବେକରୁ ହାରଟି ଓହ୍ଲାଇଦେଇ କହିଲା ହେଇ ନିଅ । ଭଲ ପୋଷାକ ପତ୍ର କିଣି ପିନ୍ଧି ଯିବ ।"

ଅଙ୍କୁର ତରତର ହୋଇ ଘରୁ ବାହାରିଗଲା । ମନ ତା'ର କୁଣ୍ଢେ ମୋଟ । ଦଶ ପାହୁଣ୍ଡ ବାଟ ଯାଇଛି କି ନାହିଁ ରଙ୍ଗଲତା ଡାକିଲା—"ଶୁକୁଟା ବାପା, ଟିକିଏ ଶୁଣିଗଲ, ଶୁଣିଗଲ ।" ଅଙ୍କୁର—କହିଲା—"ଧେତ୍, ପଛରୁ ଡାକଦେଲ ?"

ରଙ୍ଗଲତା କହିଲା—"ମୁଁ ତ ଭାବିଲି, ପର ସିନା ପଛରୁ ଡାକିଲେ ଅମଙ୍ଗଳ । ହେଉ, ତୁମେ ଯା' ଯା' । ଅଙ୍କୁର ଗଲା ହାରଟିକୁ ବିକି ଭଲ ଖଦଡ଼ ପୋଷାକପତ୍ର କିଣିଲା । ଜାମା, ଲୁଗା ଉପରେ ଯେତେବେଳେ ସେ ନେହେରୁ ଜାକେଟଟି ମଣ୍ଡାଇଲା, ତାକୁ ଯିଏ ଦେଖିଲା ସିଏ ବାଟଛାଡ଼ି ଦେଲା । ପ୍ରାର୍ଥୀପତ୍ର ଦାଖଲ କରିସାରି ଯେତେବେଳେ ଫେରିଲା, ଦାଣ୍ଡ ଦୁଆରେ ତାକୁ ଦେଖି ରଙ୍ଗଲତା ଅନ୍ୟ କିଏ ହାକିମ ହୁକୁମା ଭାବି ଘର ଭିତରକୁ ଅଣନିଶ୍ୱାସୀ ହୋଇ ପଶିଗଲା ।

ଅଙ୍କୁର ଡାକିଲା—"ଏ ଶୁକୁଟା ବୋଉ—ମୁଁ—ମୁଁ—ମ ।

ରଙ୍ଗଲତା ବାହାରି ଆସିଲା ଘରୁ ।

ଅଙ୍କୁର କହିଲା—"ମୁଁ ତ ପ୍ରାର୍ଥୀପତ୍ର ଦାଖଲ କରୁ କରୁ ତୁମେ ମୋତେ ଏମିତି ଡରିଲଣି, ମନ୍ତ୍ରୀ ହେଲେ ଆଉ କ'ଣ ନ ଡରିବ ?"

ରଙ୍ଗଲତା ହସି ହସି କହିଲା – "କାହିଁକି, ତୁମେ ମନ୍ତ୍ରୀ ହେଲେ ମୁଁ କ'ଣ ମନ୍ତ୍ରିଆଣୀ ହେଇ ନଥିବି କି ?

ଦିନ ପରେ ଦିନ ଗଡ଼ିଗଲା । ଭୋଟ ଗ୍ରହଣ ସରିଲା ।

ଅଙ୍କୁଶ ଖଣ୍ଡିଏ ଭୋଟ ପାଇଲା ନାହିଁ ।

ମନ ଦୁଃଖରେ ଯେତେବେଳେ ଘରକୁ ଫେରିଲା – ରଙ୍ଗଲତା ପଚାରିଲା – "କ'ଣ ମନ୍ତ୍ରୀହୋଇ ଫେରିଲ ?"

ଅଙ୍କୁଶ ମୁଣ୍ଡ ହଲାଇ ଉତ୍ତର ଦେଲା – "ଉ-ହୁଁ ।"

ରଙ୍ଗଲତା କହିଲା—"ଆଉ ?"

ଅଙ୍କୁଶ କହିଲା—"ଡିପୋଜିଟ୍ ଟଙ୍କା ବି ବାଜ୍ୟାପ୍ତ ହୋଇଯାଇଛି ।"

ରଙ୍ଗଲତା କହିଲା—"ସବୁ କୁକୁର ଯେବେ ପୁରୁଷୋତ୍ତମ ଯିବେ ଅଇଁଠା ପତ୍ର ଚାଟିବ କିଏ ? ଆଚ୍ଛା, ତୁମେ କାହିଁକି ହାରିଲ ମୁଁ କହି ଦେବି ।"

ଅଙ୍କୁଶ ପଚାରିଲା—"କାହିଁକି ?"

ରଙ୍ଗଲତା କହିଲା—"କେବଳ ତୁମର ନିର୍ବାଚନ ଇସ୍ତାହାର ପାଇଁ ।

ନିର୍ବାଚନ ଇସ୍ତାହାରରେ ଲେଖାଥିଲା – "ଦେଶରେ କେହି ବଂଧ୍ୟା ନାରୀ ରହିବେ ନାହିଁ । ଜନ୍ମ ନିୟନ୍ତ୍ରଣ ଯୋଜନା ଉଠାଇ ଦିଆଯିବ । ପ୍ରଜନନକୁ ପୁରସ୍କାର ଦେଇ ଉତ୍ସାହିତ କରାଯିବ । ମଦ୍ୟପାନକୁ ଘରେ ଘରେ ବାଧ୍ୟତାମୂଳକ କରାଯିବ । ସଦାଚାରଶାସ୍ତ୍ର ଭିତ୍ତିରେ ଭାଷା ପ୍ରଶ୍ନକୁ ବିଚାର କରାଯିବ । ଉତ୍ତମ ଶାସନ ଦୃଷ୍ଟିରୁ ବିଭିନ୍ନ ପଡ଼ୋଶୀକୁ ଲାଗିଥିବା ଅଞ୍ଚଳକୁ ସେହି ପ୍ରଦେଶକୁ ଦେଇ ଦିଆଯିବ । ପୁଅମାନଙ୍କୁ ମଧୁଚନ୍ଦ୍ରିକା ଯାପନ ପାଇଁ ଚନ୍ଦ୍ରପୁରକୁ ପଠାଯିବ । ଝିଅମାନଙ୍କ ଭିତରେ ଚିପା ପୋଷାକକୁ ବାଧ୍ୟତାମୂଳକ କରାଯିବ । ପ୍ରତି ସ୍କୁଲ, କଲେଜହତା ଭିତରେ 'ସିନେମା' ସବୁ ସ୍ଥାପନ କରାଯିବ, ତା'ଫଳରେ ପିଲାମାନେ ସିନେମା ଦେଖିବାର ଅଧିକ ସୁଯୋଗ ପାଇବେ ।"

ରଙ୍ଗଲତା କହିଲା—"ଖାଲି ଇସ୍ତାହାରରେ ପାଚିଲା ବାଳ ନିର୍ମୂଳ କରିବା ଆଉ ସ୍ତ୍ରୀ ପରିବର୍ତ୍ତେ ପୁରୁଷ ଜନ୍ମ କରିବା କଥା ଦୁଇଟି ରହିଲା ନାହିଁ ।"



❋

# ଘରଣୀଙ୍କ ଭଉଣୀ

ମୁଁ ସତକଥା କହିବାକୁ ଯେ ଡରୁଏ ନାହିଁ, ଏକଥା ସମସ୍ତେ ଜାଣନ୍ତି । ମୋର ସୁନାମରେ ଆଞ୍ଚ ଆସିଲା ଭଳି ମୁଁ କେବେ କୌଣସି ମିଛ କଥା କହେ ନାହିଁ । ଅନ୍ୟମାନଙ୍କ ଭଳି ମିଥ୍ୟାକଥାକୁ ସତ୍ୟର ପୁଟଦେଇ କଲେଇ କରି କହିବା ବଦଭ୍ୟାସ ମଧ୍ୟ ମୋର ନାହିଁ । ସତ କଥା ଯେତେ କଟୁ ତିକ୍ତ-କଷାୟ ହେଲେ ମଧ୍ୟ ମୁଁ ସାହସର ସହିତ କହିଥାଏ ।

ମୁଁ ପ୍ରଥମେ ଶପଥ ପାଠ କରୁନଏ । ଯାହା କହିବ ସତ କହିବ । କେବେ କେବେ କାହିଁ କାହିଁ ମିଛ କହିବ ।

ନା—ନା—

ମିଛ କାହିଁକି କହିବ ? ଗୋଟିଏ ମିଛ କହିବାକୁ ହେଲେ ତାକୁ ଘୋଡ଼ାଇବାକୁ ଯାଇ ସହସ୍ର ମିଛ କହିବାକୁ ହୁଏ । ଏ ଦୁର୍ବୁଦ୍ଧି ଭଗବାନ ମୋତେ ନ ଦିଅନ୍ତୁ । ବୟସ ଗଛରେ ଯୌବନ-ମଳୟ ଲାଗିଲାବେଳେ ନହୁଲ୍ଲୀ-ରୂପସୀ, ଛଇଳା-ନାଗରୀ, ଶୋଭନା-ସୁନ୍ଦରୀ, ପ୍ରେମିକା-ଶିରୋମଣି ନେତି, କେତି, ରାଧା, ରୋହିଣି ଗଙ୍ଗେଇ, ଚଞ୍ଚଳୀ, ଜଞ୍ଜାଳୀ, ସୁକୁଠୀ ପ୍ରଭୃତିଙ୍କ ଆଗରେ ପ୍ରେମ ପୋଷେ ପାଇଁ ଯେଉଁ ମିଛ କଥା କହିଥିଲି, ତା'ର ପ୍ରତିଫଳ ପାଉଛି ଏବେ ହାତେ ହାତେ । ତା'ର ପ୍ରାୟଶ୍ଚିତ୍ତ କରୁଛି ଡର୍ଜନେ ଝିଅଙ୍କର ଯୋଗ୍ୟ ପିତା ହୋଇ । ଆଖି ଧୋଉଛି ଗୁଣ ଗାଉଛି । ଆଉ ପୁଣି ମିଛ କହିବ କ'ଣ ? ଅନ୍ଧନର୍କରେ ପଡ଼ି ଘାଣ୍ଟି ହୋଇ ମରିବାକୁ ?

ବର୍ତ୍ତମାନ ମୋ' କଥା ପାଠକଙ୍କର ଅବଧାନକୁ ଆସୁ । ଦୀର୍ଘଦିନ ଧରି ମୁଁ ଅମଣିଆଁ ଦାମୁଡ଼ ସାଜି ବୁଲିଲା ପରେ ଦିନେ ମୋ' କାନ୍ଧରେ ଜୁଆଳୀ ପକାଇ ଦିଆଗଲା । ସମୁଦ୍ରମନ୍ଥନ ହେଲା ଭଳି କଣ୍ଠ ଘାଣ୍ଟ—

ଏକଥା ପରେ ଜଚୂବନ ସୁନ୍ଦରୀ ଶ୍ରୀମତୀ ଶୈବାଳିନୀ ଦେବୀ ମୋର ସହଧର୍ମିଣୀ ରୂପେ ପରିଚୟ ଦେଇ ଘେନ ଆସିଲେ । ଚାତକ ଆଦ୍ୟ ଆଷାଢ଼ର ପହିଲ ବର୍ଷାକୁ ବ୍ୟାକୁଳ ସମ୍ବର୍ଦ୍ଧନା ଜଣାଇଲା ଭଳି ମୁଁ ବିନା ସର୍ତ୍ତରେ ଶ୍ରୀମତୀଙ୍କୁ ଆକୁଳ ଅଭ୍ୟର୍ଥନା ଜଣାଇବା ସଙ୍ଗେ ସଙ୍ଗେ "ଦେହିପଦପଲ୍ଲବ ମୁଦାରଂ" କହି ଶରଣ ପଶିଲି ।

ଶ୍ରୀମତୀ ମୋତେ ଜଣେ ଦାସ ରୂପେ ବିନା ଦ୍ୱିଧାରେ ଗ୍ରହଣକଲେ । ତା'ପରେ...

ନଈ ସୁଅରେ ଅସଂଖ୍ୟ ଅଚିହ୍ନା ପଦାର୍ଥ ଭାସିଗଲା ଭଳି ଆମ ଘରେ ବହୁ ଅଜଣା, ଅଦେଖା ବନ୍ଧୁ-ବାନ୍ଧବମାନଙ୍କର ଭିଡ଼ ଜମିବାକୁ ଲାଗିଲା । ଆମେ କାହାକୁ ଚିହ୍ନା ନଥାଉ ।

ନିଶ୍ଚୟ ଶ୍ରୀମତୀଙ୍କ ମତ ଲୋଡ଼ା ।

ଯେତେବେଳେ ପଚରେଯାଏ—
"ସେ ପିଲାଟି କିଏ ?"
ସେ କହନ୍ତି —
—"ସେ ମୋ' ମଉସା ପୁଅ ଭାଇ ।"
"ସେ ଝିଅଟି କିଏ ?
—"ସେ ମୋ' ମାମୁଁ ଝିଅ ଭଉଣୀ ।"
"ସେ ଲୋକଟି କିଏ ?"
—"ସେ ଆମ ଗାଁଜ୍ୱାଇଁଆର ଶଳା ।"
"ସେ ଭଦ୍ରମହିଳା ଜଣଙ୍କ କିଏ ?"
—"ସେ ମୋ' ବଉଳ ।"
"ସେ ଭଦ୍ରବ୍ୟକ୍ତି ଜଣକ କିଏ ?"
—"ସେ ମୋ' ଧରମ ଭାଇ ।"

ଅଚାନକ ଭାବରେ ଦିନେ ଘରଣୀଙ୍କ ଭଉଣୀ ଭାନୁମତୀ ଦେବୀ ବି ଆସି ଆମ ଘରେ ହାଜର ହେଲେ । ଓଠରେ ନାଲି, ପାଦରେ ନାଲି, ଦଶହଜାରୀ ଚୁଲ । ଅଙ୍ଗର ଆବରଣ ପୌରାଣିକ ଯୁଗର ନଳୀବସ୍ତ୍ର । ଲଳିତ ଲବଙ୍ଗଲତା ତନୁତନମାରେ ନୂଆ ଯୌବନ ଫୁଲ ଫୁଟି ମହକୁ... ।

ଋଷ୍ୟଶୃଙ୍ଗ ଋଷି ଏକା କାହିଁକି ତାଙ୍କ ଚଉଦ ପୁରୁଷ ବି ହେଲେ ମାତ୍ର ମାର୍ଗଣରେ ପୀଡ଼ିତ ହୋଇ ଚେତା ହରାଇବେ ।

ତେବେ—

ଦୁନିଆର ସବୁ ଶାଢ଼ୀପିନ୍ଧା ଜୀବ ଯେମିତି, ଘରଣୀଙ୍କ ଭଉଣୀ ଭାନୁମତୀ ଦେବୀ ବି ସେମିତି । ଲୋଭ, ଲାଳସା, ଛଳ, ଛଟକ ଏକା ରକମର । ନିଜର ପ୍ରଶଂସା ଶୁଣିଲେ ତାଙ୍କ ଛାତି କୁଣ୍ଢେମୋଟ ହୋଇଯାଏ ।

ଭାନୁମତୀ ଦେବୀ ଆମ ଘରେ ଅଦ୍ଭୁ ରହୁ କାହିଁକି ରହିଲେ । ତାଙ୍କ ସାଙ୍ଗରେ କଥାବାର୍ତ୍ତା ହେବାକୁ ମୋ' ପାଟିରୁ ଲାଳ ବହେ; ମାତ୍ର ସାହସ ହୁଏ ନାହିଁ । କାଳେ ଘରଣୀ କ'ଣ ଭାବିବେ ?

ପହିଲ ସାକ୍ଷାତ ବେଳେ ସଂସାରର ସବୁ ସ୍ୱାମୀ ଯେମିତି ଶପଥ କରନ୍ତି, ମୁଁ ବି ସେହିପରି ବାସର ପ୍ରଦୀପକୁ ଛୁଇଁ ଏକ ପତ୍ନୀବ୍ରତ ରକ୍ଷା କରିବା ପାଇଁ ଶପଥ ନେଇଛି ।

ଯୋଗକୁ ବ୍ରହ୍ମା ଖଣ୍ଡେ ନାହିଁ ।

ସେଦିନ ହୋଇଥାଏ ଦଶା ମଙ୍ଗଳବାର ।

ଘରଣୀ ଖାଲି ରଗ, ରଗ, ଫଅଁ ଫଅଁ ହେଲେ । ଆଗରେ ମାଛି ପଡ଼ିଲେ ନବଖଣ୍ଡ । ଯେତେବେଳେ ଶ୍ରୀମତୀଙ୍କୁ ନୂଆଲୁଗା ପିନ୍ଧିବାକୁ କୁହାଗଲା, ସେତେବେଳେ ସେ ଭାନୁମତୀ ଦେବୀଙ୍କ ଧରି ଦେଖାଇ ସକେଇ କାନ୍ଦିଲେ ।

ଅନୁନାସିକ ସ୍ୱରରେ ଗୁଣୁଗୁଣୁ ହୋଇ କହିଲେ—"ଦେଖ, ମୋ' ଭଉଣୀଟା ସେଦିନରୁ ଆସିଲାଣି ତାକୁ 'ଏ' ପଦେ ମୁହଁଖୋଲି କଥା କହୁ ନାହାନ୍ତି । କେମିତିକା ମଣିଷ ଏ ?"

"ମଲୁ ଖୋଜୁଥିଲି ପଇଡ଼ ପାଣି ।
ବଇଦ କହିଲା ପିଅ ତୋରାଣି ।"

ପୁଣି—

ଲୁଗା ଆସିଲା ଭାନୁମତୀ ପିନ୍ଧିଲେନି । ଶ୍ରୀମତୀ ପିନ୍ଧିଲେ । ଶ୍ରୀମତୀଙ୍କ ଓଠରେ ଅନାବିଳ ହସର ଲହରୀ ଖେଳିଗଲା ।

ଦି' ଦିନ ପରେ—

ଶ୍ରୀମଣିଙ୍କ ବାପଘରୁ ଅଡ଼େଇ ଗାଈ ଗୁଆ ଆସି ପହଞ୍ଚିଲା । ତାଙ୍କ ଦାଦି ପୁଅ ଭାଇ ହଗୁରର ବାହାଘର । ଭାନୁମଣି କାରୁ ନ' ଯାନ୍ତୁ । ସେ କେତେରକମର ପେଖନା ଛାଡ଼ି କହିଲେ—

"ଅପା ଲୋ, ତୁ' ଯା,

ମୁଁ ଏଠାରେ ରହୁଛି ।"

ଶ୍ରୀମଣି କହିଲେ—"ରହୁନୁ, ଏ କ'ଣ ଘର ନୁହେଁ ? ମୁରୁକିହସା ଦେଇ ଅନ୍ୟ କାମରେ ଚାଲିଗଲେ । ଶ୍ରୀମଣି କ'ଣ ଜାଣିଥିଲେ ଯେ, ଏତିକ କହିଦେବା ଫଳରେ ସେ ହାଣ କୁରାଢ଼ି କେକରେ ପକାଇଲେ ?

ସଡକୁ ସଡ ଶ୍ରୀମଣି ବାପ ଘରକୁ ଗଲେ । ଭାନୁମଣି ଦେବୀ ଗଲେ ନାହିଁ ।

ଆଠଦିନ ପରେ ଯେତେବେଳେ ଶ୍ରୀମଣି ବାପଘରୁ ଫେରିଲେ ସେତେବେଳେ ସେ ଯାହା ଦେଖିଲେ ନିଜର ଆଖିକି ବିଶ୍ୱାସ କରିପାରିଲେ ନାହିଁ ।

ଆମର ଚତୁର୍ଥୀ ସରିଥାଏ । ଅଳତା ଗର ଗର ପାଦ । ହାତେ ଓଢ଼ଣା ଟାଣି ଯେତେବେଳେ ଭାନୁମଣି ଦେବୀ ଗରା କାଖେଇ ଝୋଷେଇ ଘର ଭିତରକୁ ପଶିଗଲେ—

ଶ୍ରୀମଣି ମୋତେ ପଚାରିଲେ—

—"ସେ କିଏ କି ?

ମୁଁ କହିଲି"—ଚିହ୍ନିପାରୁନ ?

ଶ୍ରୀମଣି କହିଲେ—"ନା" ।

ମୁଁ କହିଲି—"ସେ ପରା ଖୋଦ ଘରଣୀଙ୍କ ଭଉଣୀ । ରୋଷେଇ ଘର କାନ୍ଥକୁ ଧରି କରି କରି କରି ହସିଉଠିଲେ ଭାନୁମଣି ଦେବୀ ।

ଶ୍ରୀମଣି ମୁଣ୍ଡରେ ହାତ ଦେଇ କହିଲେ—"ହାଇରେ ଦଇବ କି କାଳ ହେଲା ଏ ଆସି ? ଭଗାରି ପୁଣି ଏକା ମା' ପେଟର ଭଉଣୀ ।"

# ଚମକୁ ଚାଙ୍କ ଘଣେ

'ଚମକୁ ଚାଙ୍କ ଘଣେ', ଆପଣ ହସିବେନ । କଥାଟାକୁ ଧୀର ସ୍ଥିର ଚିତ୍ତରେ, ପାଞ୍ଚମନ ପଚିଶ ପ୍ରକୃତିରେ ସାତ ଅଷ୍ଟାଁ ଛପନ ଥର ଭାବି ନେବେ । ଆପଣଙ୍କୁ ବିଲକୁଲ ମିଛ, ମୋତେ ପୁରାପୁରି ସତ । ମୁଁ ମାଇନର ପାଶ୍ କରିସାରି ମାଟ୍ରିକ୍ ପଢ଼ିବା ଯାଏ —ଜାଣି ନଥିଲି ଯେ ସ୍ତ୍ରୀ ଲୋକମାନେ ଜନ୍ମ କରନ୍ତି ବୋଲି । ମୋର ପକ୍ୱକେଶା, ଗଳିତ ନଖ ଦନ୍ତା, ଜାମଳ ଭୂଧର-ନିଭ ପୟୋ-ଧରା, ଓ୍ୱାଡ଼ ଗାଲ୍ ଥନ୍ତଲପେଟୀ, ପଳିତା ଆଖି ବୁଢ଼ୀ ମୋ' ମନ ଗହ୍ୱରରେ ଏପରି ଏକ କିଂଭୂତକିମାକାର Idea ଗୁଞ୍ଜି ପୋତି ଦେଇଥିଲା ଯେ ଯାହାକି ମୋ' ପାଚିଲା ଜୀବନ ଯୌବନ ଉପରେ ମଧ୍ୟ ଗୋଟିଏ ଗୋଟିଏ ବିଷପନ୍ନ ଝାଡ଼ୁଥିଲା ।

ଇସ୍

ବାବାରେ.........

ପିଲାବେଳୁ ମୁଁ ଥିଲି ମା' ଛେଉଣ୍ଡ । ବାପା ଜାମୁଡ଼ି ଜାମୁଡ଼ି ଜାବୁଡ଼ି ଧରି, ଗୁମ୍ପୁଡ଼ା ମାରି ମୋ' ବୋଉକୁ ମାରି ପକାଇଥିଲେ, ଅବଶ୍ୟ ବଡ଼ ପିଲା ହେଲା ପରେ ମୁଁ ଏକଥା ଜାଣିଲି । ବୋଉ ମଲା ହଣ୍ଡା ଶେଷ, ଶୋକ ଶେଷ ହେଲା । ତାପରେ ବାପାଙ୍କ ମୁଣ୍ଡ ବାଉ-ଚକ୍ର ପରି ଘୂରିଲା । ତାଙ୍କର ବନ୍ଧୁବାନ୍ଧବ ସାଙ୍ଗ ସାଙ୍ଗ, ଭାଇ ବିରାଦର ନାନା ପ୍ରକାର ମହୀରାବଣ ମାୟା ଦେଖାଇ ମାଳବର୍ତ୍ତୀ ଶୃଗାଳ ନ୍ୟାୟରେ ଦ୍ୱିତୀୟ ଦାର ପରିଗ୍ରହଣ କରିବାକୁ ପ୍ରବର୍ତ୍ତାଇଲେ । ମୋ ବାପା ଉତ୍ତରରେ ଏତିକି କହିବାର ମୁଁ ଲକ୍ଷ୍ୟ କରିଚି—"ନା,ନା ମୋର ଆଉ ଦ୍ୱିତୀୟ ଦାର ପରିଗ୍ରହଣ କରିବାକୁ ବଳ ନାହିଁକି ବେଳ ନାହିଁ । କେତେ ଇଷ୍ଟ, ସେବା, କେତେ କଷ୍ଟ ସହି ହାଣ୍ଡିଏ ହାଣ୍ଡିଏ ଲହୁ ଲହୁ ଢାଳି, ତିନୋଟି ପିଲା ଜନ୍ମ କରିଥିଲି । ଉଚ୍ଛା ବଳଦ ପରି ଯେଉଁଠା ବାଟ କାଟି ସେଇଠା ଗୁଲିଗଲେ । ଆଉ କାହିଁକି ସେ କାଉ ପହିଲ ଘୂଅଣିଆ ବୁଦ୍ଧି କରିବ ?"

ହରଦସ୍ମ—ନନ୍ଦ ଗୋଡ଼ୀ......

ସୂଚୁକା ଗାଲୁ ଆଈବ ମୋର

ବେଳେ ବେଳେ କହେ—"ଗନ୍ଧଆରେ, ମୋ' ପୁଅ ତୋ' ପାଇଁ କେତେ ଦିଅଁ ଦେବତାଙ୍କୁ ଅମଣିଆ ଯାଚିଛି, କେତେ ଶିବ ପୂଜିଛି, କେତେ ଓଷା ଉଆଁସ କରି ପାକଲ ଆମ୍ବ ପରି ଗୋରା ତକ ତକ ସୁନା ଦିହକୁ କେନ୍ଦୁକାଠ ପରି ହାଣ୍ଡିକଳା କରିଛି, ତୁ' ସତରେ କେଉଁଦିନ ପାରିବୁ, ପାଠଶାଠ ପଢ଼ିବୁ, ବଡ଼ ହେବୁ, ମଧୁବାବୁ ସଙ୍ଗେ ଲଢ଼ିବୁ—ତା' କ୍ଷଣ କଣ ଫେରିବ ? ମା, ଏଣ୍ଡୁଙ୍କୀ ଖାଇ ଜାଣନ୍ତି । ମୁଁ ତ ପାଚିଲି ବୋଇତାଳୁ । କାଲି ସକାଳେ କୋକେଇରେ ବନ୍ଧା ହୋଇ ଭେଡ଼ିକ ଯିବ ।

ପ୍ରକୃତରେ—

ମୋ' ବାପା ନ ଥିଲେ ମୁଁ ସେ କେଉଁ ଦିନରୁ ହାଡ଼ ହାଡରେ ଘୋଷଗପାଳ ମଶାଣିରେ କୁଆ, ଶାଗୁଣା ବିଲୁଆଙ୍କର ଭୋଜନର ପରମ ସାମଗ୍ରୀ ହୋଇଥା'ନ୍ତି—କିଏ କହିବ ? ବାପା, ମୂଲ, ମଜୁରି ଲାଗି, ପେଟକୁ ପିଠି କରି, ମୋ' ମୁହଁରେ ଆହାର ଦେଇ ମଲା ମାଇଲା କାଳରେ ପିଣ୍ଡକୁ ବଞ୍ଚେଇଛନ୍ତି—ତା' ନହେଲେ ବାଉଁଳି ତେଲ୍‌ପିଣ୍ଡି ହୋଇ ମୋ' ଦିନ ବି ସରିଥା'ନ୍ତା ।

ମୋତେ ଯେତେବେଳେ ପାଞ୍ଚ ବରଷ ସେତିକବେଳେ ମୋ' ନାଆଁ ଲେଖା ହେଲା ଚାଟଶାଳୀରେ । ବାପା ଗୋଟିଏ ଶୁଆ ପକ୍ଷିଆ ଖଡ଼ି କିଣି ଦେଲେ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଗଡ଼ଗଡ଼ କରି ପାଉଁଶ ଉପରେ ମଡ଼େଇଲି । ଅଳ୍ପଦିନ ଭିତରେ ମୁଁ ହେଲି ବଡ଼ ଚାଟ । ମୋ' ଉପରେ ଗ୍ଲଟର ଉର ଟିକେ କମ୍ । ଅବଧାନ ଚୁଟୀ-ସର୍ବସ୍ୱ ପାଣୁ ମହାନ୍ତି । ବେତ ନେଇଁ କେଇଁ କରି 'ରେ' ବୋଲି କହିଲେ ପିଲେ ଚର ଚର ଲୁଗାରେ ମୁତି ପକାନ୍ତି । କେତେକଙ୍କର ବି ନଣ୍ଡ ଥରେଇ ଆସେ । ଥରେ କ'ଣ ହେଲାନା, ଅବଧାନେ ଚବିଶ ପଚିଶ୍ ଦିନକାଳ ସ୍କୁଲକୁ ଆସିଲେନି ଖବର କ'ଣ ?

ଜ୍ୱର···ଘୋର ଜ୍ୱର······

ଭଡ ପାଣି ଚୁଟୁକ । ଆମର ଖୁସି କହିଲେ ନ ସରେ । ଦିଅଁ ଦେବତାଙ୍କ ପାଖରେ ଭୋଗ ରାଗ ଡାଲିକୁ ଡାଲି କଲୁଁ । ଅବଧାନ ମରୁ । କେହି କେହି ପ୍ରସ୍ତାବ ବାଢ଼ିଲେ ନାଇଁ ନାଇଁ ବାପା ମରୁ । ତା' ହେଲେ ହଡ଼ା ଶେଷ—ନଡ଼ା ଶେଷ ।

ଠିକ୍ ପଚିଶ ଦିନ ପୂରିଲା ପରେ ଅବଧାନ ଗୃହାଳୀରେ ହାଜର । ନଜର ପଡ଼ିଲାକ୍ଷଣି ଗଜ୍ ଗଜ୍ କରି ପିଲା ଲୁଗାରେ ମୁଣ୍ଡିଲେ । ସାଙ୍ଗେ ସାଙ୍ଗେ ବଡ଼ ପାଟ୍ ବି ଚାଲିବ । ବଳି ପଡ଼ିବାକୁ ଯାଇଁ ଅର୍ଗଳି ଦେଖିଲେ ଅଜାର ଯେମିତି ସ୍ଥିତି ଥିରେ ଅବଧାନଙ୍କୁ ଦେଖି ପିଲାଙ୍କର ଠିକ୍ ସେହିଭଳି ।

କିନ୍ତୁ···

ଏଥର ଅବଧାନଙ୍କ ଗାଲ ପୁଚୁକା-ପୁଚୁକା । ପେଟ ଉହ୍ଲେଇ ପରି । ଆରିସା ପିଠା ପରି ଫୁଲିଛି । ଯେଉଁଠି ବସୁଚନ୍ତି— ଉଠି ପାରୁନାହାନ୍ତି ସେଠୁ । କ'ଣ ହୋଇଛି ବୋଲି ପିଲାଏ କୁନ୍ କାନ୍ ହେଲେ । ମୁଁ ଘରକୁ ବାହୁଡ଼ି ଆଈଙ୍କ ପଚାରିଲେ ତ ସେ କହିଲା—

"ତୁମ ଅବଧାନଙ୍କର କ'ଣ ପିଲାପିଲି ହେବ ?" ମୋ ମନକୁ କଥାଟା ପିଟିଲା । ମୁଁ ପିଲାଙ୍କୁ କହିଲି । ପିଲାଏ ତାଳମାରି ଭୋଳରେ ମାଳି ଛୁଣ୍ଡାଇଲେ, ଶାଳୀ ଅବଧାନର ପୁଅ ହେଉ ବୋଲି ପାଟି କରି ମୃଦୁ ମୃଦୁ ଗାଳି ଦେଲେ ।

ଆଠ ଦଶମାସ ବେଳକୁ ଅବଧାନଙ୍କର ଅବସ୍ଥା ସାଙ୍ଘାତିକ । ଏଡୁଟିନା-ଏଡୁଟା ଏକଦମ୍ କୁଆଁର ପୁହ୍ଲେଇ ଘୁମ ଭଳି ପେଟ । ଶୁଣ୍ ଶୁଣ୍ ଅବଧାନ ଯାଉଚନ୍ତି ଡାକ୍ତରଖାନାକୁ । ମୁଁ ଆଗ୍ରହରେ ସହିତ ଗୃହିଁଥାଏ ଅବଧାନଙ୍କର ପୁଅ ହେବକି ଝିଅ ହେବ । ଏକୋଇଶିଆ ପାଲା ହେବ, ବାଜା ବାଜିବ, ଶିରଣୀ ଚକଟା ହେବ । ତିନି ଦିନପରେ ଖବର ଆସିଲା ଅବଧାନ ଶେଷ । ପିଲେ କହିଲେ ବେଶ୍ ବେଶ୍, ଠାକୁରେ ଗୁହାରି ଶୁଣିଛନ୍ତି ।

ତା' ପରେ···

ମୁଁ ଏକ ମାଇନର ଇସ୍କୁଲରେ ଷଷ୍ଠ ଶ୍ରେଣୀରେ ନାଆଁ ଲେଖାଇଲି । ସେଠାରେ ବାଳକ ଅପେକ୍ଷା ବାଳିକା ସଂଖ୍ୟା ଅଧିକ । ଆଈ ବୁଢ଼ୀ ମୋତେ ପାଖରେ ଶୁଆଇ କାନରେ ଚୁପ୍ ଚୁପ୍ କହେ— "ଗନ୍ଧିଆରେ, ମାଈକିନିଆ ଜାତିଟା ବାଘୁଣୀ, ଅସୁରୁଣୀ ଜାତି—ତାଙ୍କୁ ସବୁବେଳେ ଦୂରରୁ ଜୁହାର କରୁଥିବୁ । ତାଙ୍କ ପାଖକୁ ଲଗି ବସିବୁନି—ପୋକ ମଗଜକୁ ଉଠିବେ—ପିଠିକଣ୍ଠ ଚମକିବ—ପିଳ୍ହଳା ମାରିବ—ସେତେବେଳକୁ ବୁଦ୍ଧି ପାଇବନି । ଅଖଞ୍ଜା ହୋଇଯିବାର ଭୟ ରହିଛି । ଯଦି କନ୍ଦର୍ପ ଯୋଗିଣୀ-ଝିଅ—ଶର ବିନ୍ଧିବ ତେବେ ଏମିତି ରୋଗ ହେବ ଯେ ବଞ୍ଚିବା ବେଠିକଣା ।

ଆଈ ବୁଢ଼ୀର ଏଇ ସବୁ କଡ଼ା ମନ୍ତବ୍ୟ ଶୁଣି ମୋତେ ଘର ଭୟ ଲାଗେ । ପଛ ବେଞ୍ଚରେ ଏକୁଟିଆ ଚୁପ୍ ହୋଇ ବସେ । ପିତେଇ, ମଣ୍ଟି, ଲବଣୀ, ଶରଧା, ଗାଣ୍ଡେଇ, ହଗୁରଙ୍କି ଦେଖିଲା କ୍ଷଣି ମୁଁ ଆଗରୁ ଦଣ୍ଡବତ ହୋଇ ପଡ଼େ । ସେମାନେ ପାତି ମାଙ୍କଡ଼ ପରି ଦାନ୍ତ ନିକୁଟି କରି କରି ହସିଉଠନ୍ତି । ତାଙ୍କ ସାଙ୍ଗରେ କେତେ ନପୁଙ୍ଗା, ଛତରା, ବଜାରୀ ଯୂଥାହାଳିଆ—ଦାନ୍ତ କାଲନ୍ତି—ମୋତେ ଛୁଞ୍ଚି ପଡ଼ିଲା ପରି ଲାଗେ । ଏଥିପାଇଁ ମୋତେ କ୍ଲାସରେ "ମାଇଚିଆ" "ଏ ଯୁଗର ଅଦ୍ଭୁତ ମାନବ" "ତୁଷାର ମାନବ" ଓ **Indian First Foolish** ( ଭାରତୀୟ ପ୍ରଥମ ବୋକା ) ବୋଲି ଚିଡ଼ାନ୍ତି ।

ଯାହାହେଉ—

କୌଣସି ମତେ ଭର୍ଣ୍ଣାକୁଲରଟି ପାଶ୍ କରି ପକାଇଲି, ସେଇ ବର୍ଷ—ଗ୍ରୀଷ୍ମଛୁଟିରେ ମୋର ବାହାଘର ହୋଇଗଲା । ଶ୍ରୀମତୀ ନାଗିମା ଓ୍ୱରଫ ଶ୍ରୀମତୀ ତନ୍ତୁ ବାଘୁଣୀ ଦେବୀ ଗଣ୍ଠି ବନୋଦନୀ ସହଧର୍ମିଣୀ—ସହ କର୍ମିଣୀ—ସହମର୍ମିଣୀ ହୋଇ ଆସିଲେ । ଖିଆ, ପିଆ, ଦିଆ, ନିଆ, ଧୁମ୍‌ଧାମ ଚାଲିଲା । ଠକ୍ ଚଉଠି ଦିନ ସକାଳୁ ମୋ' ଛେଚର ଛେ'ଠେଇଁ ପଡ଼ିଲା । ଇଲୋ ବୋପାଲୋ—କେମିତି କ'ଣ ହେବ । ଶଳା କି ବୁଦ୍ଧି କଲି । ହାଇରେ କପାଳ । ମୋ' ବୋଉ ଥାନ୍ତା ଯଦି କ'ଣ ଏତେ କଷ୍ଟ ମୋତେ ଦେଇଥାନ୍ତା ! ସିନେମା ଫିଲମ୍ ପରି—ଆଈ ବୁଢ଼ୀ ଦେଇଥିବା ଟିପ୍ପଣୀ ମୋ' ଆଖି ଆଗରେ ନାଚି ଉଠିଲା ।—"ଗନ୍ଧିଆରେ, ଏଇ ମାଇକିନା ଜାତିଟା ହେଉଚି ବାଘୁଣୀ, ଅସୁରୁଣୀ ଜାତି, ତାଙ୍କୁ ସବୁବେଳେ ଦୂରୁ ଜୁହାର କରୁଥିବୁ, ତାଙ୍କ ଗୁହାଁଣୀ ଛୁଞ୍ଚି ମୁନ ପରି ମୁନିଆ—ଥରେ ଫୋଡ଼ିଦେଲେ ନଷ୍ଟ ନୁହାଣ କରି ପକାଇବେ ଇତ୍ୟାଦି ଇତ୍ୟାଦି ।" ପୁଣି ବେଳେ ବେଳେ ଗୁପ୍ତ ଦମ୍ଭକରି ସାହସ ବାନ୍ଧୁଥାଏ—ଅଣ୍ଟା ଦମ୍ଭ କରୁଥାଏ—ଆଚ୍ଛା ଦେଖାଯିବ—ଭୟ କ'ଣ ?

ରାତି ବାରଟା ଆସି ଉପସ୍ଥିତ ହେଲା । ଗୁପ୍ତରେ ଛନକା ପଶୁଥାଏ । ମୁଁ ଗୋଟିଏ କଣରେ ବସିଥାଏ । ଶ୍ରୀମତୀ ନାଗିମା ଯେତେବେଳେ ଝମ୍ ଝମ୍ କରି ଘର ଭିତରକୁ ଆସି ବାଘ ମଣିଷକୁ ଝାମ୍ପିଲା ପରି ମୋ' ଆଡ଼କୁ ହାତ ବଢ଼ାଇଦେଲେ—"ଇଲୋ ବୋପାଲୋ ମଲି" କହି ଚିତ୍କାର

*

କରି ଉଠିଲି । ସେ କିଛି ନ ଜାଣିଲା ପରି କଣରେ ବସି କୁକୁର ଭଳି ଧଇଁଇଲେ ।

ସାଇପଡ଼ଶାରୁ ଲୋକେ ଜମା ହେଲେ । ବଡ଼ ଅପ୍ରସ୍ତୁତ ହେଲେ ବାପା । ମୁଁ କିଛି ନ କହୁଣୁ ବାପା କୈଫିୟତ ଦେଲେ—"ଗୋଟାଏ କୁକୁଡ଼ାବିଲ୍ଲି ପୁଅକୁ କାମୁଡ଼ି ପକାଇଛି ।" ସମସ୍ତେ ଫେରିଗଲେ ।

ତା' ପରେ······

ବିବାହ- ବିଜ୍ଞାନ କାମ-ବିଜ୍ଞାନରେ ପରିଣତ ହେଲା । ଦୁଇମାସ ପରେ ଉଦରର ସଂପ୍ରସାରଣ ଘଟିଲା ଶ୍ରୀମତୀଙ୍କର । ମୋତେ ବି ପାଳିକରି ହୋଇ ମୋ ପେଟ ବଢ଼ିଲା । ବେଳେ ବେଳେ ଭାବେ—ଶ୍ରୀମତୀଙ୍କି ବୋଧହୁଏ ଗୋଟାଏ କିଛି ରୋଗ ଧରିପକାଇଲା ! ମୋର ପୁଅଟିଏ ହେବକି !

ଯେବେ ସରଜୁବାବୁ ଡାକ୍ତର କହିଲେ—

"ଶ୍ରୀମତୀଙ୍କର ଗର୍ଭ ହୋଇଛି ?"

"ଏଁ କାହାର ?"

"ଶ୍ରୀମତୀଙ୍କର"···

"ଆଉ ମୋର"—

ଆପଣଙ୍କର ପ୍ଲୀହା ରୋଗ···ପ୍ଲୀହା ମିକ୍ସ୍ଚର ଖାଇ—ମୋର ପ୍ଲୀହା କମିଗଲା ପରେ ମୁଁ ପ୍ରଥମ କରି ଜାଣିଲି ଯେ ସ୍ତ୍ରୀ ଲୋକମାନେ ଜନ୍ମ କରନ୍ତି ବୋଲି ।



# ଏ ଯୁଗର ଗୋପୀ ଓ କୃଷ୍ଣ

"ଷୋଳ ସହସ୍ର ଗୋପନାରୀ
ମୋତେ ବରିଲେ ତପ କରି,
ମୁଁ ତାଙ୍କୁ ପୂରାଇବି ଆଶ
ସେ ମୋର ଭକତ ବିଶ୍ୱାସ ।"

ଅଳ୍ପ ସମୟ ପୂର୍ବରୁ ଯିଏ ଶୁଖୁଆ ଟିକିଏ ପୋଡ଼ିଦେଲେ ପଖାଳ ଗଣ୍ଡାଏ ଖାଇଦେଇ ଅଫିସ ଚାଲିଯିବାପାଇଁ ଘରଣୀଙ୍କି ବ୍ୟତିବ୍ୟସ୍ତ କରୁଥିଲେ, କଲେକ୍ଟରେଟ୍‌ର ସେହି ଅଭିଜ୍ଞ ବୁଢ଼ା ନାଜର ପାଚିଲାବାଳିଆ ଷଠ କିଶୋରବାବୁ ଗାଧୋଇ ଆସି ଅଣନିଶ୍ୱାସୀ ହୋଇ ଅଧ୍ୟାୟେ ଭାଗବତ ପଢ଼ିବାରେ ଲାଗିଛନ୍ତି । ଭାବପ୍ରବଣ ହୋଇ, ମୁଣ୍ଡ ହଲାଇ ଲହରେଇ ଲହରେଇ ଇହା, ଇହା କହି ସ୍ୱର ତୋଳୁଛନ୍ତି । ଆଖିରୁ କେତେବେଳୁ ସୂତାବନ୍ଧା ଚଷମାଟା ଖସିପଡ଼ିଥିଲେ ମଧ୍ୟ ସେଥିପ୍ରତି ତାଙ୍କର ଖାତିର ନାହିଁ ।

ବେଳେ ବେଳେ ପୁଣି ଭାଗବତ ବନ୍ଦ କରି ବୁକ ଦେଇ ଗୋପୀମାନଙ୍କର ବିପ୍ରଲମ୍ଭ ଭକ୍ତି କଥା ଚିନ୍ତାକରି ତନ୍ମୟ ହୋଇ ପଡ଼ି କାଲି ଷଠା ଷାଠିଏ ବର୍ଷରେ ପାଣି ଗ୍ରହଣ କରିଥିବା ପଞ୍ଚମ ପତ୍ନୀ ଛଇଳାମଣି ଶ୍ରୀମତୀ ଚୁଡ଼ୁନ୍ଦ୍ରୀ ଦେବୀଙ୍କୁ ଡାକି କହୁଛନ୍ତି – "କୁଆଡ଼େ ଗଲହେ ?

ଏ ଆଡ଼େ ଆସ — "ଦେହି ପଦ ପଲ୍ଲବ ମୁଦାରଂ ।"

ରୋଷେଇ ଘରେ ଥାଇ ଚୁଡ଼ୁନ୍ଦ୍ରୀ ଦେବୀ କଂସା ତାଟିଆ ଫୋପାଡ଼ି କଟୁ ମନ୍ତବ୍ୟ ବାଢ଼ି କହୁଛନ୍ତି—"ଆହା ରସିକ, କଖାରୁ ଫୁଲକୁ ପାରିଲା ପୋକ । ବୁଢ଼ା ଭଡ଼ୁଆର ପ୍ରେମ ଦେଖ । ବାପ ମା'ତ ମୋର ସେୟା । ଧନ ଲୋଭରେ ବୁଢ଼ା ବର ହାତରେ ମୋତେ ଛନ୍ଦି ଦେଇ 'ହେଲୁ ନାଶ, ହେଲୁ ପାର' ହୋଇ ନିଶ୍ଚିନ୍ତ ହୋଇ ରହିଲେ ।

ନାଜର ବାବୁ ସିନା ଉପରିସ୍ଥ କର୍ମଚାରୀଙ୍କୁ—ଫଳେ—ପୁଷ୍ପେ ସନ୍ତୁଷ୍ଟ କରି (ଏହାକୁ ଯେପରି କେହି ତୋଷ, ଲାଞ୍ଚ, କାଲପୋଡେଇ ବୋଲି ନ ଭାବନ୍ତି ) ବୟସକୁ ସର୍ଭିସ ବହିରେ କମାଇ ଦେଇ, ସମସ୍ତଙ୍କ

ଆଖିରେ ଧୂଳି ପକାଇ, ମୁହଁରେ ରଙ୍ଗକାଳି ବୋଳି ବଦନରେ ଚନ୍ଦ୍ର ଦେଖାଇ ଚାକିରି ବଜାୟ ରଖି ପାରୁଛନ୍ତି, ମାତ୍ର "ରତ୍ନଲୁଂ ଚ ଉନାରେ ମର୍କଟୀରମ୍ୟା" ଚୂଡ଼ାନ୍ଦ୍ରୀ ଦେବୀଙ୍କୁ ସନ୍ତୁଷ୍ଟ କରିବେ କେମିତି ।

ଯାହା ହେଉ ନାଜର ବାବୁ ପୁଣି ଭାଗବତ ପାଠରେ—ମନୋନିବେଶ କଲେ ଓ ଗୋପୀଙ୍କ ଭକ୍ତିକଥା ଚିନ୍ତା କରି ଅଥୟ ହେଲେ । ମନେ ମନେ ଠିକ୍ କଲେ ଚାକିରି ଛାଡ଼ିଲା ପରେ—ଗୋପୀଙ୍କ ବିଷୟରେ ଗବେଷଣା କରି ଏକ ଥେସିସ୍ ଲେଖିବେ । ଯେଉଁ ଥେସିସ୍ କି, ସାଧୁ ସନ୍ଥ, ବୈଷ୍ଣବମଣ୍ଡଳୀଙ୍କର ହୃଦହାର ହେବ ।

ଭାବନ୍ତି—"ଧନ୍ୟ ସେ ଗୋପୀମାନେ !"

କେତେ ଜନ୍ମର ପୁଣ୍ୟ ଫଳରେ ସେମାନେ ନନ୍ଦ ନନ୍ଦନ, ବଂଶୀ ବଦନ, ପୀତ ବସନ ବନମାଳୀ, ପୃଥିବୀର ସର୍ବଶ୍ରେଷ୍ଠ ଭାଗ୍ୟବାନ ପ୍ରେମ-ସମ୍ରାଟ କୃଷ୍ଣଙ୍କୁ ଭୁଜ ମୃଣାଳରେ ବାନ୍ଧି କରି—ଅଧରରୁ ସୁଧା ପାନ କରିଛି, ମନ ମଧୁକରର ସାଧ ମେଣ୍ଟାଇ, ପ୍ରୀତି-ପୀୟୁଷର ସ୍ୱାଦ ଚାଖି, ଆନନ୍ଦାତିଶଯ୍ୟାରେ କାଳାତିପାତ କରୁଥିଲେ ।

ମଲ୍ଲୀମାଳ ଶ୍ୟାମକୁ ଦେଇ ମନ ତୋଷୁଥିଲେ । ଗ୍ରୀଷ୍ମ ହୋଇଲେ ବାସ ଚନ୍ଦନ ଲେପୁଥିଲେ ।

ବୋଧହୁଏ.........

ସେହି ଗୋପୀମାନେ ପରବର୍ତ୍ତୀ କାଳରେ ଇଜିପ୍ଟର କ୍ଲିଓପାଟ୍ରା, ଆରବର ଲୈଲା, ଫ୍ରାନ୍ସର ଜୋସେଫାଇନ, ଇଂଲଣ୍ଡର ଲେଡ଼ି ଗୋଦିଭା, ଖ୍ରୀଷ୍ଟାନ କିଲର, ଭାରତର ପଦ୍ମିନୀ ଓ ଗୀତା ଫାରିଆ ଏବଂ ରୁଷିଆର ତେରେଶ୍କୋଭା ରୂପେ ଜନ୍ମ ଗ୍ରହଣ କରି ପ୍ରେମ ରାଜ୍ୟରେ ଆଲୋଡନ ସୃଷ୍ଟି କରିଛନ୍ତି ।

ପୁଣି କେହି କେହି ଗ୍ରାମ ସେବିକା, ଲେଡ଼ି ହେଲଥ୍ ଭିଜିଟର, ଲେଡ଼ି ସୋସାଲ ଅର୍ଗାନାଇଜର, ଅରଣ୍ଠ କେନ୍ଦ୍ରର ତତ୍ତ୍ୱାବଧାରିକା, ଓ୍ୱେଲ ଫେୟାର ଅଫିସର ଲେଡ଼ି ଷ୍ଟେନୋ, ସିନେମାର ଅଭିନେତ୍ରୀ ରୂପେ ଅଭିନୟ କରି ପ୍ରେମର ସାଗରରେ ଜୁଆର ଉଠା ସୃଷ୍ଟି କରୁଛନ୍ତି ।

ସତେ ସେ ଗୋପୀମାନେ କ'ଣ ଆଜିକାଲିର—ମଡର୍ଣ୍ଣ-ଗାର୍ଲ ନୂତନା ରାଧାମାନଙ୍କଠାରୁ ଆହୁରି ସୁନ୍ଦର ଥିଲେ ?

ସେମାନେ କ'ଣ ସ୍ଲିଭ ଲେସ୍ ବ୍ଲାଉଜ ଉପରେ ଟେପଲେସ-ଶାଢ଼ୀ ପିନ୍ଧୁଥିଲେ ?

ନାଇଁତ—ବସ୍ତ୍ର ହରଣ ବେଳେ କୃଷ୍ଣ ଯେଉଁ ଶାଢ଼ୀ ସବୁ କଦମ୍ବ ଗଛରେ ନେଇ ବାନ୍ଧିଥିଲେ ସେ ତ ଟେରିଲିନ କି ଟେପ୍‌ଲେସ ଶାଢ଼ୀ ନଥିଲା ।

ପୁଣି—

ମନରେ ସନ୍ଦେହ ହୁଏ······

ସେ ଗୋପୀମାନେ କ'ଣ ଧଳା ବାଳ କଳା କରିବା ପାଇଁ ଲୋମା ଲଗାଉଥିଲେ ? କଜଳପାତିରେ କଳା ପାରି ନାଇବା ପରିବର୍ତ୍ତେ ବଜାରରୁ ସୁରମା କିଣି ନାଉଥିଲେ ? ଓଠରେ ଲିପ୍‌ଷ୍ଟିକ ମାରୁଥିଲେ ? ଯାହାକୁ କି କବି ଚନ୍ଦ୍ରିଜନ ପାରି ବମ୍ବୋଷ୍ଠୀ ବୋଲି କହୁଥିଲେ ? ସେମାନେ କ'ଣ ଚିପା ପୋଷାକ ପିନ୍ଧି ଅଣ୍ଟା ଭଙ୍ଗି ଭଙ୍ଗି, ମୁରୁକି ମୁରୁକି ହସି, ହେଉ ବୁହାଁଣୀ ଚାଲି ବାଟ ବୁଲୁଥିଲେ ? ସକାଳୁ ଉଠି ଲେଭେଣ୍ଡ଼ର ଲଗାଉଥିଲେ ? ଖାଡ଼ା ଫେରି ଯିବାବେଳେ କେବଳ ବ୍ରେଷ୍ଟ ଟାଇଟ୍ ଭିଡ଼ି, ଆକବରଖାଁ ଗୁଡ଼ାଖୁ ଘସି ଘସି ପାଇଖାନାକୁ ଯାଉଥିଲେ ?

ବଏଲ୍‌ନରେ ବ୍ରଜ ଦାଗକୁ ଲିଭାଇ, କୃଷ୍ଣ କୁନ୍ତଳରେ ସାମ୍ପୁ ମାରି କୃଷ୍ଣ ଚୂଡ଼ା ପରିବର୍ତ୍ତେ ଦାସ କେରିଣ୍ଟାଫୁଲ ଖୋସୁଥିଲେ ? ଖୋଲା ଠିପି ଦୋକାନକୁ ବର୍ଣ୍ଣିକ ସୁରାପାନ କରିବାକୁ ଯାଉଥିଲେ ?

ଯଦି ସେ ଗୋପୀମାନେ ଏତେ ସୁନ୍ଦରୀ ଥିଲେ ତେବେ ସେମାନେ ବିଶ୍ୱ ସୁନ୍ଦରୀ ପ୍ରତି ଯୋଗିତାକୁ ଯାଇ ନଥିଲେ କାହିଁକି ? ସେଠାରେ ତ ନିଶ୍ଚୟ ସେମାନଙ୍କର ହାସ୍ୟାଭିନେତା ବବହୋପଙ୍କ ସହିତ ସାକ୍ଷାତ ମିଳିଥାନ୍ତା ।

ତା'ପରେ—

ଯୌନ ବୁଭୁକ୍ଷୁ ସୈନ୍ୟ ଗ୍ରୁଉଣୀ କି ଯାଇ—ଲିପ୍‌ଷ୍ଟିକ ଜର୍ଜରିତ ଅଧା ଖୋଲା ଓଠ ଯୋଡ଼ିକ ବଢ଼ାଇ ଆଖି ପିଟୁଳାକେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରିଥାନ୍ତେ ! ଆଉ ଏ ଗୋପାଳ ଟୋକାଟା ସାଙ୍ଗରେ ମାତି ଥିଲେ କାହିଁକି ?

ଆଉ କ'ଣ ତେବେ, ସେ ଗୋପୀଗୁଡ଼ା ହୁଣ୍ଡୀ ଥିଲେ ?

ତା' ନ ହୋଇଥିଲେ ସେମାନେ କଲେଜ ଛକ, କାଠଯୋଡି କୂଳ, ଖଣ୍ଡଗିରି, ନନ୍ଦନ କାନନ, ସମୁଦ୍ର କୂଳ, ମେରାଇନଡ୍ରାଇଭ୍, ମାର୍କେଟବିଲଡ଼ିଙ୍ଗ ପାଖକୁ କେଳି ଉଦ୍ଦେଶ୍ୟରେ—ନ ଯାଇ କେବଳ ଜଣେ କୃଷ୍ଣଙ୍କ ପାଇଁ ବାଉଳା ହୋଇ ଛପି ଛପି ଯମୁନା କୂଳ ଓ ନିକୁଞ୍ଜ କାନନକୁ ଯାଉଥିଲେ କାହିଁକି ?

ନାଜର ବାବୁ ଏଥର ଭାବିଲେ—ତାଙ୍କର ତ ମନେହୁଏ ଝୁମୁ ଝୁମୁ ଝୁଣ୍ଟିଆ ବାଜିବା । ଦର୍ଦ୍ଦୁର କଣ୍ଠଧାରିଣୀ, କଳକଳ-ପ୍ରବାହିଣୀ ଝରଣା ଗଞ୍ଜଣୀକା, କଷା କଷା କଷା ତାଡ଼କା ହାସିମା, ଜହ୍ନି ମଞ୍ଜିଠାରୁ ଗୋରୀ ପ୍ରେମିକା ଶିରୋମଣି ଶ୍ରୀମତୀ—ଚୂଡ଼ାନ୍ତ ଦେବୀ ସେହି ଗୋପୀମାନଙ୍କ ଭିତରୁ ଜଣେ ! କେତେ ବେଳୁ ଆସି ପଛରେ ଚୁପ୍ ହୋଇ ଠିଆ ହୋଇଥିବା ଚୂଡ଼ାନ୍ତୀ ଦେବୀ ଉତ୍‌ଫଣ ଫମ୍ପର ଗର୍ଜି ଉଠି—ଫକୀର ମୋହନଙ୍କ ପେଟେଣ୍ଟ ମେଡ଼ିସିନ୍‌ରୁ ନାଜର ବାବୁଙ୍କୁ କଡ଼ା କରି ପାନେ ଚଢ଼ାଇ ଦେଇ କହିଲେ—"ତୁମେ କହୁଥିଲ ନା ତୁମ ଚଉଦ ପୁରୁଷ କହୁଥିଲ ଯେ ମୁଁ ଗୋପୀ । ପର ପୁରୁଷକୁ ଯେନ କେଳି କରୁଛି ? ତୁମେ କୃଷ୍ଣ— ସରକାରୀ ସ୍ତ୍ରୀ ମାନଙ୍କୁ ଯେନ ଅଫିସରେ ରଙ୍ଗରସରେ ମାତି ଘରକୁ ଆସି ମଲା ସାପପରି କାନ୍ଥ ଆଡ଼କୁ ମୁହଁକରି ଶୋଉଛ—"

ଦୁମୁ ଦୁମୁ କରି ଏଥର ଚାଲିଗଲେ ସେ ।

ନାଜର ବାବୁ ଭାଗବତ ପଢ଼ା ବନ୍ଦ କରି, ପିଠିକି ଆଉଁଷୁ ଆଉଁଷୁ, ଭଙ୍ଗା ଛତାଟିଏ ଧରି ଅଖିଆ ଅପିଆ ଅଫିସକୁ ବାହାରିଗଲେ ।

ଅଫିସରେ ନାଜର ବାବୁ ହାଜର ହୋଇଛନ୍ତି ନା ହେଡ଼ ଆସିଷ୍ଟାଣ୍ଟ ବାବୁ ଏକ ଅର୍ଡ଼ର ଆଣି ତାଙ୍କୁ ଧରାଇ ଦେଲେ ।

ନାଜର ବାବୁଙ୍କ ହାତରୁ କଲମ ଖସି ପଡ଼ିଲା । ତାଙ୍କ ଅସଲ ସର୍ଭିସ ବହିଟି ମିଳିଛି । ନକଲ ସର୍ଭିସ ବହିଠାରୁ ବୟସ ଦଶବର୍ଷ ଅଧିକା ।

ନାଜର ବାବୁଙ୍କ ଯିବା କଥା ଶୁଣି ଯେଉଁ ଦୁଇ ଝିଅଜଣ ସର୍କାରୀ ସ୍ତ୍ରୀ ସେ ଅଫିସରେ ଥିଲେ ସେମାନେ ଆସି ହାଜର ହୋଇ ନାକ ସୁଉଁ ସୁଉଁ କରି କହିଲେ—"ନାଜର ବାବୁ ଆପଣ ଚାଲିଗଲେ ଆମେ ଚଳିବୁ କେମିତି !"



# ନିୟତିର-ପରିହାସ

କିସ ପୁଣି ଦେଖା ନ ଯାଏ ଜୀଇଁଥିଲେ ଜୀବନରେ ? ଦୁନିଆରେ ସବୁ ପୁଣି ଘଟେ ।

ଅନୁତାପରେ ଦଗ୍‌ଧ ହୋଇ, ଅନୁଶୋଚନାରେ ସନ୍ତରଣ କରି, ଜମାଟ ବନ୍ଧା ଅଭିମାନ ନେଇ, ସେଉଁଦିନ ରାୟବାହାଦୂର ନିଷ୍କମ୍ପକ ସାହାଣୀ ସ୍ୱୟଂ ସାତ ବଜାରରେ ଗୋଟିଏ କରୋସିନି ଡାବଲ ଉପରେ ବସି, ନିର୍ବାଚନ ବିଜୟାଭିଳାଷୀ ସୁରା ପ୍ରମତ୍ତ ଅଜାତ ଶ୍ମଶ୍ରୁ ଅର୍ବାଚୀନ ଯୁବକ ଦଳଙ୍କର ହାଇଡ୍ ପାର୍କରେ ଓଜସ୍ୱିନୀ ଭାଷାରେ ବକ୍ତୃତା ଦେଲାଭଳି ଅତ୍ୟୁଚ୍ଚ କଣ୍ଠରେ ଆଗ୍ରହାତିଶଯ୍ୟରେ ଡାକ ଛାଡ଼ିଲେ—

—"ନାଉ ନିଅ ନାଉ"—

ସେଦିନ ଖଣ୍ଡ ମଣ୍ଡଳରେ ସମସ୍ତ ଲୋକ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସମସ୍ତଙ୍କ ମନରେ ଶଙ୍କା-ପ୍ରଶ୍ନବାଚୀର ଅସମ୍ଭବ ଭିଡ଼ ଜମି ଉଠିଥିଲା । "ଏ ପୁଣି କି ରଙ୍ଗ ?"

"ଯେ ମେଳା ଦେଖା ଶୁଣାନାହିଁ । ସେ ମେଳା କରୁ କାହିଁ ପାଇଁ ?" ସବୁ ଯୁଗରେ ସବୁ ଦେଶରେ ବ୍ୟତିକ୍ରମ ହିଁ ଜନ ନେତ୍ର ଆକର୍ଷଣର ହେତୁ ହୋଇଥାଏ ।

ଏ କ୍ଷେତ୍ରରେ

ସୁଟ୍, ସାର୍ଟ, ହ୍ୟାଟ୍, ବୁଟ, ଚଷମା ପିନ୍ଧି ରିଷ୍ଟୱାଚ ବାନ୍ଧି ନାଉ ବିକିବା ଏକ ସଂପୂର୍ଣ୍ଣ ନୂତନ କଥା ନୁହେଁ ତ ଆଉ କ'ଣ ? କୌତୂହଳ ବଶତଃ ଅନେକ ଲୋକ ନିଷ୍କମ୍ପକ ବାବୁଙ୍କୁ ଘେରି ଆସି ଜମା ହେଲେ । ସତ୍ତାରେ ବହୁଜନ ଦେଖିଲେ ଯେପରି ଖ୍ୟାତନାମା ଅଭିନେତା, ଅଭିନେତ୍ରୀଗଣ ଉତ୍ସାହିତ ହୋଇ ନିଖୁଣ ଅଭିନୟ ପ୍ରଦର୍ଶନ କରିବାରେ

ପ୍ରବୃତ୍ତ ହୁଅନ୍ତୁ; ବନ୍ଧୁଲୋକ ଦେଖି ସେହିପରି ବସ୍ତୁମନ୍ଦକ ବାବୁ ଆନନ୍ଦିତ ହୋଇ ନାଉ ସମ୍ବନ୍ଧରେ ତଥ୍ୟ ମୂଳକ ଭାଷଣ ଆରମ୍ଭ କଲେ ।

କନ୍ତୁ—

ମୂଲ୍ୟ ଅନ୍ତରିକ୍ତ ।

ଅଧିଗଜ ଦୂରରେ ଶବ୍ଦ ହେଉଥିବା ଯେଉଁ ନାଉର ମୂଲ୍ୟ ଦଶ ପଇସା ସେହି ନାଉର ମୂଲ୍ୟ ବସ୍ତୁମନ୍ଦକ ବାବୁଙ୍କ ନିକଟରେ ଦଶଟଙ୍କା । ଯେଉଁ ଯୁଗରେ ରକେଟ ଯାଇ ଚନ୍ଦ୍ରଲୋକରେ ପହଞ୍ଚିଲଣି, ଗ୍ରୀଷ୍ମା-ପଥରେ ମଧୁ ଚନ୍ଦ୍ରିକା ଉଦ୍‌ଯାପିତ ହେଲଣି, ଜଣକର ହୃତ୍‌ପିଣ୍ଡ ଅନ୍ୟ ଜଣଙ୍କର ଦେହରେ ଖଞ୍ଜା ହେଲଣି, ସେ ଯୁଗରେ ପୁଣି ଏମିତି କିଏ ବୋକା ଅଛି ଯେ ଦଶପଇସାରେ ନାଉ ନ କିଣି ଦଶ ଟଙ୍କାରେ କିଣିବ ?

କିଛି ସମୟ ପରେ—କିଛି ମନ୍ତବ୍ୟ ପ୍ରକାଶ କରି ବସ୍ତୁମନ୍ଦକ ବାବୁ କହିଲେ—

—"ଘୁଷୁରିକୁ ପାଚିଲା କଦଳୀ ଦେଖାଇଲେ ସେ ତାର ମହତ୍ତ୍ୱ କ'ଣ ବୁଝିବ ? ଅନ୍ଧ ପାଖରେ ଦୀପ ଜାଳିଲେ ସେ କ'ଣ ଜାଣିବ ? କାଲ ପାଖରେ ଗୀତ ଗାଇଲେ ସେ କ'ଣ ବୁଝିବ ? ଶିକ୍ଷା, ଦୀକ୍ଷା ବିବର୍ଜିତ ରୁଚି ଗର୍ହିତ, ଅରସିକ ଲୋକମାନେ ଏ ନାଉର ମହତ୍ତ୍ୱ କ'ଣ ବୁଝିବେ ? ଜହୁରୀ ସିନା ହୀରକର ମୂଲ୍ୟ ବୁଝେ—ଆନ ତାକୁ ଅଲୋଡ଼ା ପଥର ବୁଝି ଫିଙ୍ଗି ଦିଏ କାହିଁକି ? ଯେଉଁ ନାଉ ଅପରିଷ୍କାର ଅପରିଚ୍ଛନ୍ନ କଣ୍ଟା ଝିଟାରେ ମାଡ଼ି ଫଳୁଛି ସେ ଯାହା, ଯେଉଁ ନାଉ ସଯତ୍ନ-ବର୍ଦ୍ଧିତ ହୋଇ ରଞ୍ଜାରେ ମାଡ଼ୁଛି ସେ କ'ଣ ସେୟା ? ଯେଉଁ ନାରୀ ଝାଟିମାଟି ଘରେ ଅଭାବ ଅସୁବିଧାରେ ବଢ଼ୁଛି ସେ ଯାହା, ଯିଏ ରାଣୀହଂସପୁରରେ ଦାସ ଦାସୀ ପରିବେଷ୍ଟିତା ହୋଇ ରାଣୀ ମା ଆଖ୍ୟାରେ ଭୂଷିତ ହୋଇଛି ସେ କ'ଣ ସେୟା ? କଦାପି ନୁହେଁ ।

ଆକାଶ ପାତାଳ ତଫାତ ।

ଦେଶର ଦୁର୍ଭାଗ୍ୟ । ଏବେ ବି ଏ ଜାତି ସଚେତନ ନୁହେଁ । ଏବେ ବି ଆମ ଲୋକମାନେ ଅନ୍ଧକାରରେ ବୁଡ଼ି ରହିଛନ୍ତି । ଭଗବାନ ଏମାନଙ୍କୁ ସଦ୍‌ଜ୍ଞାନ ଦିଅନ୍ତୁ ।

ଯାହାହେଉ—

ବିଷ୍ଣୁମୂର୍ତ୍ତି ବାବୁ ନାଉଗୁଡ଼ିକ ସ୍କନ୍ଧରେ ବହନ କରି ଆହତ ସୈନିକର ଅମାପ ବ୍ୟଥା ଘେନି, ଅନ୍ତରରେ କାନ୍ଦି ମୁହଁରେ ଶୁଖିଲା ହସ ହସି ଘରକୁ ଫେରିଲେ ।

ଦୁନିଆଁରେ ସବୁଦିନ କାହାରି ସମାନ ଯାଏ ନାହିଁ । କାୟା ସଙ୍ଗେ ଛାୟା ଥିଲା ପରି, ଆଲୋକ ପରେ ଅନ୍ଧାର ଥିଲା ପରି, ହସ ପଛରେ କାନ୍ଦ ଥିଲା ପରି, ସୁଖ ସଙ୍ଗେ ଦୁଃଖ ଯୋଡ଼ି ହୋଇଥାଏ । ମନୁଷ୍ୟ ମାତ୍ରେ ଅବସ୍ଥାର ଦାସ, କେହିଁ ନିୟତିର ପରିହାସକୁ ଏଡ଼ାଇ ପାରିବେ ନାହିଁ ।

ରାୟ ବାହାଦୁର ବିଷ୍ଣୁମୂର୍ତ୍ତି ସାହାଣୀ କ'ଣ ଟିକିଏ ଲୋକ ? କ୍ଷମତାରେ ଥିଲାବେଳେ ସେ ଏପାରି ଗଛକୁ ସେପାରି କରୁଥିଲେ । ଏକା ଘାଟରେ ବାଘ ବକୁଲି ପାଣି ପିଆଉଥିଲେ । ସେ ବାଘୁଆ ନିଶ ହଳକ ମୋଡ଼ି ଖେଁ କରି କାଶିଦେଲେ ହଜାର ଲୋକଙ୍କର ଛାତିରେ ଛନକା ପଶି ଯାଉଥିଲା । ସାହାଣୀ ବଂଶର କୁଳଚନ୍ଦ୍ରମା ବିଷ୍ଣୁମୂର୍ତ୍ତି ବାବୁ ଅଧ୍ୟବସାୟ କର୍ମନିଷ୍ଠାରୁ ଉଠି ଶାସନର ସର୍ବୋଚ୍ଚ ସଂସ୍ଥାରେ ମୁଖ୍ୟ ହେବାର ଗୌରବ ଅର୍ଜ୍ଜନ କରି ପାରିଥିଲେ । ଯେଉଁମାନେ ତାଙ୍କ ଠାରେ ଦେବତ୍ଵ ଆରୋପ କରୁଥିଲେ ସେହିମାନଙ୍କ ନାଆଁ ଆଜି ଶୁଣିଲେ ଭୟରେ ତାଙ୍କର ଛାତିରେ କାତେ ପାଣି ହୋଇଯାଉଛି । ସ୍ନେହ ହେପାଖି, ଠିକାଦାରଙ୍କଠାରୁ ଯେଉଁ ଗୁପ୍ତଧନ ଆଣି ନିଜର ଭଉଣୀ ନାମରେ ବ୍ୟାଂକ ବାଲାନ୍ସ ଖୋଲିଥିଲେ ତାହା ଆଜି ଆଉ ତାଙ୍କର ପ୍ରାପ୍ୟ ନୁହେଁ । ଏକା ନାହିଁ ବ'ଖଣ୍ଡ । ଏକା ମ' ପେଟର ଭଉଣୀ ବିଶ୍ଵାସ-ଘାତକତା କରିଛି । ଅଚଳାଚଳ ସମ୍ପତ୍ତି ଘରଣୀଙ୍କ ଭାଇଙ୍କ ନାମରେ ଧର୍ମକୁ ଆଖିଠାରି ମାରିବାପାଇଁ ବେନାମୀ କରିଥିଲେ, ତାକୁ ଆଉ ସେ ଫେରାଉ ନାହାନ୍ତି ।

ତେଣୁ—ବିଷ୍ଣୁମୂର୍ତ୍ତି ବାବୁଙ୍କ ଅବସ୍ଥା ଏକାନ୍ତ ଦୟନୀୟ ହୋଇ ଉଠିଛି । ଡାଣ୍ଡରୁ ଆସିଲେ ହାଣ୍ଡିରେ ପଶୁଛି ।

ଘରଣୀ କୃଷ୍ଣକାମିନୀ ଦେବୀ ପାଣି ଫୁଟାଇ ଚୁଲି ଜଗାଇ ବସିଛନ୍ତି— ବୁଢ଼ାଉକ ଆସିଲେ ଭାତ ରନ୍ଧା ଯିବ । ପିଲାମାନେ ଭୋକରେ ଆଉଟି ପାଉଟି ହୋଇ କାନ୍ଦି କାନ୍ଦି ଶୋଇଲେଣି ।

❋

କନ୍ଥୁ—ବସ୍ତମନ୍ତକ ବାବୁ ଯେତେବେଳେ ଅଣନଶ୍ୱାସୀ ହୋଇ ନାଉ ବୋଝକୁ ମୁଣ୍ଡରୁ ଓହ୍ଲାଇବାପାଇଁ ଘରଣୀଙ୍କୁ ଆହ୍ୱାନ କଲେ ସେତେବେଳେ ଘରଣୀ, ଫକିର ମୋହନଙ୍କ ପେଟେଣ୍ଟ ମେଡ଼ିସିନ୍ ହାତରେ ଧରି ଘରୁ ଦଉଡ଼ି ଆସି ମଣିହରା ଫଣିମା ପରି ଗର୍ଜିଉଠି କହିଲେ— ବ୍ଜଳ କାହିଁ ?"

'ନାହିଁ ।'

"ପିଲା ଖାଇବେ କଣ ?"

"ପାଉଁଶ"

ଫକିର ମୋହନଙ୍କ ପେଟେଣ୍ଟ ମେଡ଼ିସିନ୍‌ରୁ ଦୁଇପାନ ମାତ୍ର ଚଢ଼ାଇଦେଇ ଘରଣୀ ଚଳଚଞ୍ଚଳ ପଦକ୍ଷେପରେ ଘର ଭିତରକୁ ପଶିଗଲେ ।

ରାୟ ବାହାଦୁର ବସ୍ତମନ୍ତକ ସାହାଣୀ ସେତେବେଳେ ଗୋଟିଏ କାନ୍ଥକୁ ଆଉଜି କେବଳ ତପ୍ତ-ଅଶ୍ରୁ ବର୍ଜନ କରୁଥିଲେ । ଭାଗ୍ୟ ! ଭଗବାନଙ୍କୁ ଦୋଷ ଦେଇ ଦୀର୍ଘ ନିଶ୍ୱାସ ପକାଉଥିଲେ । ମନେ ମନେ ଅତୀତର ସ୍ମୃତି ତର୍ପଣ କରୁଥିଲେ । ଏଇତ ଦୁନିଆ ।

କିଛି ସମୟପରେ—କୃଷ୍ଣ କାମିନୀ ଦେବୀ ନିଜ ବେକର ସୁନାହାରଟି ଆଣି ଦେଇ କହିଲେ—"ତୁମ କଥା ଜଣାଗଲା । ହେଇ ନିଅ ଏହାକୁ ବିକି ବ୍ଜଳ ପତ୍ରବାପତ୍ର ଆଣିବ । ଆଗେ ପିଲାଙ୍କ ଜୀବନ ବଞ୍ଚୁ । ବସ୍ତମନ୍ତକ ବାବୁ ଅବୋଧ ଶିଶୁଟି ପରି ଘରଣୀଙ୍କ ହାତରୁ ସୁନା ହାରଟି ନେଇ ରୁମାଲରେ ବାନ୍ଧି ପକେଟରେ ରଖିଲେ ।

ଏହି ହାରଟିକୁ ଜଣେ ରାଜପୁତନାର ପ୍ରସିଦ୍ଧ ବ୍ୟବସାୟୀ ହୟଗ୍ରୀବ ଅଗ୍ରୱାଲ ଅନୁଗତ୍ୟର 'ପରମ ନିଦର୍ଶନ ସ୍ୱରୂପ ଉପଢ଼ୌକନ ଦେଇଥିଲେ । ତା ପରେ ବସ୍ତମନ୍ତକ ବାବୁ ବଣିଆ ଘରେ ଉପସ୍ଥିତ ହେଲେ । କଷଟି ପଥରରେ କଷିଦେଲା ପରେ ଜଣାଗଲା ଯେ ସୁନା ହାରଟି ପୁରାପୁରି ଛଣା ପିତଳ ।

ମୁଣ୍ଡରେ ହାତ ଦେଇ ବସି ପଡ଼ିଲେ ବସ୍ତମନ୍ତକ ବାବୁ । ପଞ୍ଜରା ଫଟାଇ ବାହାରିଗଲା ଉଷ୍ମ ଦୀର୍ଘଶ୍ୱାସ । ଫକିରମୋହନଙ୍କ ପେଟେଣ୍ଟ

ମେଡ଼ସିନର ଉପ୍ଯୁକ୍ତତା ସମ୍ବନ୍ଧରେ ସେ ସଚେତନ ହୋଇ ଉଠିଲେ ।

ତନ୍ଦ୍ରିଆର ଦିନ—

ପୁଣି—

ସେ ଏକ ଐତିହାସିକ ଅଭିଯାନ ଆରମ୍ଭ କଲେ । ଉତ୍ତମ ପୋଷାକ ପତ୍ରରେ ସଜ୍ଜିତ ହୋଇ (କାରଣ ତାଙ୍କର ବିଶ୍ୱାସ ଥିଲା ଭେକ ନ ଥିଲେ ଭିକ ମିଳେନାହିଁ) ତାଙ୍କର ଅଶୀତିତମ, ପ୍ରଜନନ ଅକ୍ଷମ, ବୃଦ୍ଧ ନାଲି ମାରଣା ଷଣ୍ଢକୁ ନେଇ ବିକିବାପାଇଁ ଗୋଟିଏ ହାଟରେ ଉପସ୍ଥିତ ହେଲେ । ଯେଉଁ ଗ୍ରାହକ ଆସି ଲାଙ୍ଗୁଡ଼ ଟେକିଦେଲା ସେ ମୁହଁ ମୋଡ଼ି ଚାଲିଗଲା । ଷଣ୍ଢଟି ଏପରି ଜୀର୍ଣ୍ଣ ଶୀର୍ଣ୍ଣ ଯେ କୌଣସି ହିନ୍ଦୁଧର୍ମ ବିଦ୍ୱେଷୀ ଲୋକ କିଣି ନେବାକୁ ବି ଆଗ୍ରହ ପ୍ରକାଶ କଲେ ନାହିଁ ।

ଜ୍ଞାନ-ବୃଦ୍ଧ ଷଣ୍ଢଟିକୁ ବିକିବା ପାଇଁ ବିଷ୍ଣୁମୂର୍ତ୍ତି ବାବୁ ବହୁତ ପରିଶ୍ରମ କଲେ । ଲୋକେ ସେଥିପ୍ରତି ଗୁରୁତ୍ୱ ଦେବାତ ଦୂରର କଥା ବରଂ ବିରକ୍ତ ହେଲେ । ଜଣେ ଅଧେ ବଡ଼ ପାଟିଆ ହୋଇ କଥାବାର୍ତ୍ତା ହେବାର ଶୁଣାଗଲା—"ଏ ପାପୀ ଶେଷରେ ଷଣ୍ଢ ବିକିବାକୁ ଆସିଲା । ଦଉଡ଼ିଟାଏ କି ବିଷ ଶିଶିଏ ଯାହା ପାଇଲା ନାହିଁ । ଠାଉଠରି କରି ରାଜ୍ୟର ସର୍ବୋଚ୍ଚ କର୍ତ୍ତା ହୋଇଗଲା । ଧରିକୁ ସରି ଜ୍ଞାନ କରି ରାଜ୍ୟଟାକୁ ମନଇଚ୍ଛା ଲୁଣ୍ଠନ କଲା । ଉନ୍ମତ୍ତ ହୋଇ ନାରୀ ଧର୍ଷଣ, ନାରୀହତ୍ୟା ସବୁ କିଛି କରିଗଲା । ପାପୀଟା ଯେମିତି ଉଠିଥିଲା ସେମିତି ପଡ଼ିଲା । କେହି ତାକୁ ଉଠେଇନି କି କେହି ପକେଇନି । ସେ ନିଜେ ସବୁ କିଛି କରିଛି"—

ବିଷ୍ଣୁମୂର୍ତ୍ତି ବାବୁଙ୍କ କାନରେ ଏଥିରୁ କିଛି ବାଜିଗଲା । "ବିଷ ଶିଶିଏ ପାଇଲା ନାହିଁ" ଏଇ ପଦକ ତାଙ୍କ ମୁଣ୍ଡରେ ଚକ ଘୂରିଲା ପରି ଘୂରି ଲାଗିଲା । ଅନୁଚ୍ଚ ଶବ୍ଦରେ ତାଙ୍କ ପାଟିରୁ ବାହାରି ଆସିଲା—"ହଁ, ମୁଁ ନିଜେ ସବୁ କରିଛି । ଆଉ ଗୋଟିଏ କାମ ବାକି ରହିଲା ।"

ହଠାତ୍ ପାଗଳ ପରି ସେ ପାଟିକରି ଉଠିଲେ – "ନା ତାଛଡ଼ା ଅନ୍ୟ ଉପାୟ ନାହିଁ – ସେତିକ—କରିବି – ମୁଁ ନିଶ୍ଚେ କରିବି—"

●

# କାହୁଁ ଦେଉଥାଏ ପରକୁ

ଅପରାହ୍ନ ଉର୍ତ୍ତୀର୍ଣ୍ଣ ପ୍ରାୟ ।

ସ୍ଥାନ,

ଶିଳ୍ପାଞ୍ଚଳ ପଡ଼ିଆ ।

ସ୍ୱୟମ୍ବର ସଭାଠାରୁ ଆହୁରି ଆଡ଼ମ୍ବର ପୂର୍ଣ୍ଣ ଭାବରେ ଆୟୋଜନ କରାଯାଇଛି ଏକ ସଭା । ଭାଇ ପାଠକେ ଯେପରି ଏହାକୁ ସୌଖୀନ—କଳାକାରମାନଙ୍କର ସଭା ବା ଶ୍ରମିକ ଇୟୁନିୟନର ବାର୍ଷିକ ସଭା ବୋଲି ନ ଭାବନ୍ତି । ଏହା ବହୁ ଆକାଂକ୍ଷାତ ପରିବାର ନିୟନ୍ତ୍ରଣ ଉପଲକ୍ଷେ ଏକ ସଭା ।

ଏହି ସଭାପାଇଁ ସପ୍ତାହେ ହେଲା ଦିନ ରାତି ଡାକବାଜ ଯନ୍ତ୍ର ସାହାଯ୍ୟରେ ଖୁବ୍ ପ୍ରଚାର ହୋଇଛି । ଖବର କାଗଜମାନଙ୍କରେ ଆଖି ଦୃଶିଆ ସଚିତ୍ର ସଂବାଦ ବଡ଼ ବଡ଼ ହରଫରେ ପ୍ରକାଶ କରାଯାଇଛି । ଇଣ୍ଡିଆନ ଇଂକ୍‌ରେ ଲେଖା ହୋଇ ପ୍ରାଚୀର ପତ୍ରମାନ ଘରଆଡ଼େ କାନ୍ଥ, ବାଡ଼, ଗାଧୁଆ ଘର ପାଇଖାନା ସବୁଆଡ଼େ ମରା ଯାଇଛି । ଜନ୍ମ ନିୟନ୍ତ୍ରଣ ସଂପର୍କରେ ଅଧିକ ତଥ୍ୟ ସମ୍ବଳିତ ପ୍ରଜ୍ଞାପନ ମେଡ଼ି ଦି ଅନେକ ଥର ସହର ପରିକ୍ରମା କରିଛି । ସେଥିପାଇଁ ବହୁ ଜନ ସମାଗମ ହୋଇଛି ।

ସ୍ୱତନ୍ତ୍ର ଭାବରେ ବହୁ ବିଶିଷ୍ଟ ଭଦ୍ରବ୍ୟକ୍ତି, ଭଦ୍ରମହିଳାମାନଙ୍କୁ ନିମନ୍ତ୍ରଣ କରାଯାଇଛି । ସେମାନେ ବହୁ ମୂଲ୍ୟ ପୋଷାକ ପତ୍ରରେ ସଜ୍ଜିତ ହୋଇ ସଭା ମଣ୍ଡପର ପ୍ରଥମ ଧାଡ଼ିରେ ବସିଛନ୍ତି । ଭଦ୍ର ମହିଳାମାନେ ଆଭିଜାତ୍ୟର ବାହାନା କରି ଏଭଳି ବେଶଭୂଷା ପିନ୍ଧିଛନ୍ତି ଯେ ଦୂରରୁ ଯେ ଦେଖୁଛି ସେ ଉଲଗ୍ନ ଭାବି ଆଖି ବୁଜି ପକାଉଛି ।

ହାତ କଟା ସ୍ଲିଭଲେସ୍ ବ୍ଲାଉଜ ସାଙ୍ଗକୁ ଟପଲେସ୍ ରଙ୍ଗୀନ ଶାଢ଼ୀ ପିନ୍ଧିଆ କବିଙ୍କ କଥା ମନେ ପଡ଼େ—"ବିଚିତ୍ର ବେଶ ମଞ୍ଜୁଳାରେ ବାଳା !"

ଗରିବ ମାଲିପ ହୋଇଛନ୍ତି ଯେ କିଏ ଶାଳୀ ଠାପରା କରିବ ? ସମସ୍ତେ ତ ବଡ଼ ଲୋକଙ୍କର ମା·····।

ସର୍ବାଙ୍ଗରେ ମାଡ଼ିଥିବା ମଇଁଷିଆ ଜାଦୁକୁ କୁଣ୍ଡାଉ କୁଣ୍ଡାଉ ପିକା ଠାଣି ଠାଣି ହଗୁରା ପଧାନ ସାଆନ୍ତାଣୀମାନଙ୍କୁ ଲକ୍ଷ୍ୟ କରି କହିଲା "ମୋ କ୍ଷୁଦ୍ର ମତରେ ଯଦି ଆମ ମା' ଭଉଣୀମାନେ ସଂଯତ ବେଶ ଭୂଷା ହୁଅନ୍ତେ, ପୁଅ ଝିଅମାନେ ଅଶ୍ଳୀଳ ସିନେମା ଚିତ୍ର ନ ଦେଖନ୍ତେ, ସ୍କୁଲ କଲେଜରେ ଯୁବକ ଯୁବତୀମାନେ ଦେହକୁ ଦେହ ଲଗା ଲଗି ହୋଇ ବସି ପାଠ ନ ପଢନ୍ତେ, ତେବେ ଏ ଦେଶରେ ଅନେକ ପରିମାଣରେ ବ୍ୟଭିଚାର କମିଯିବା ସଙ୍ଗେ ସଙ୍ଗେ ଜନସଂଖ୍ୟାର ବି ହ୍ରାସ ଘଟନ୍ତା ।

ହଗୁରା ପଧାନ ପାଖକୁ ଲାଗି ବସିଥିବା ଅଇଁଠୁ ସାହୁ, ଅଗାଧ ମଲିକ, ଗନ୍ଧିଆ ଭୋଇ ହେଁ ହେଁ କରି ହସି ଉଠିଲେ ।

ହଗୁରା ପଧାନ ନିଜକୁ ଅସହାୟ ମଣିଲା ।

ଏଥର ଆଗ ପଛ ହୋଇ ଗୁରିଖଣ୍ଡ ମଟର କାର ଆସି ସଭା ମଣ୍ଡପ ପାଖରେ ଠିଆ ହୋଇଗଲା ।

ସମସ୍ତେ କହିଲେ—"ହେଇ ମନ୍ତ୍ରୀ ଆସିଗଲେ ।"

ସଭାସ୍ଥଳ ନିସ୍ତବ୍‌ଧ ହୋଇଗଲା ।

ସ୍ୱାସ୍ଥ୍ୟ ମନ୍ତ୍ରୀ ମାନ୍ୟବର ନଗଦ ନାରାୟଣ ନରେନ୍ଦ୍ର ମହାଶୟ ସଭାପତିର ଆସନ ଅଳଂକୃତ କଲେ । ମୁଖ୍ୟ ଅତିଥି ଭାବରେ ସ୍ୱାସ୍ଥ୍ୟ ବିଭାଗର ସୁଯୋଗ୍ୟ ଡାଇରେକ୍ଟର ପ୍ରେମ ବାରିଧି ଜୟସିଂ ଠିଆ ହୋଇ କଣ୍ଠ ଝାଡ଼ି କହିଲେ—

"ଭାଇ ଓ ଭଉଣୀମାନେ, ମୁଁ ପ୍ରଥମେ ଆପଣମାନଙ୍କଠାରୁ କ୍ଷମା ମାଗି ନେଉଛି । ଆମ୍ଭମାନଙ୍କର ଆସିବା ବିଳମ୍ବ ହୋଇଗଲା । ବାଟରେ ସ୍ୱାସ୍ଥ୍ୟ ମନ୍ତ୍ରୀ ମହୋଦୟ ଜନ କଲ୍ୟାଣ ଉଦ୍ଦେଶ୍ୟରେ ଗୋଟିଏ ସୁରମ୍ୟ ଗଣିକାଳୟ ଓ ଗୋଟିଏ ଗଞ୍ଜେଇ ଦୋକାନ ମହାଡମ୍ବରରେ ଉଦ୍‌ଘାଟନ କଲେ । ସେଥିପାଇଁ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚି ହେଲା ନାହିଁ ।

ଜନତା ଘନ ଘନ କରତାଳି ବର୍ଷଣ କଲେ ।

ପ୍ରେମବାରିଧି ବାବୁ ଏଥର ଅଧିକ ଉତ୍ସାହିତ ହୋଇ ତାଙ୍କ ଭାଷଣ ଆରମ୍ଭ କରି କହିଲେ—ଯେଉଁଥିପାଇଁ ଏ ସଭାର ଆୟୋଜନ କରାଯାଇଛି

ତାହା ଉତ୍ତା ଅଧିକେ ଆପଣମାନେ ଜାଣନ୍ତି । ଦେଶର ଲୋକସଂଖ୍ୟା ନଦୀର ଜୁଆର ଭଳି ହୁ, ହୁ, ହୋଇ ବଢ଼ୁଛି । ସମୟ ଆସିବ ଯେତେବେଳେ ମଣିଷ ମାଂସ ମଣିଷ ଖାଇବେ । ବର୍ତ୍ତମାନ ପ୍ରତିଦିନ ଆମ ଦେଶରେ ଆୟତନ ଅନ୍ୟୁନ୍ୟ ବାରଲକ୍ଷ ବର୍ଗମାଇଲ ଥିବାସ୍ଥଳେ ଜନସଂଖ୍ୟା ପଚିଶ କୋଟିରୁ ଅଧିକା ହେଲଣି । ଶହେବର୍ଷ ପରେ ଏହା ଶହେ ପଚିଶ କୋଟିକୁ ଟପିଯିବ ।

ତେଣୁ ଆପଣମାନେ ଜନ୍ମନିୟନ୍ତ୍ରଣର ଉପକାରିତା ବିଷୟରେ ସମ୍ୟକ୍ ଭାବରେ ଅବଗତ ନ ହେଲେ ଅବସ୍ଥା ଅସମ୍ଭାଳ ହୋଇ ଉଠିବ ।

ଏତିକିବେଳେ ଜଣେ ଲୋକ ଧଇଁସଇଁ ହୋଇ ଦଉଡ଼ିଆସି କ'ଣ ପ୍ରେମବାରିଧି ବାବୁଙ୍କ କାନରେ ଫୁସ୍ ଫୁସ କରି କହିଲା । ସେ ଭାରି ବିବ୍ରତ ହୋଇ ମନ୍ତ୍ରୀଙ୍କୁ ହାତଯୋଡ଼ି ଅନୁମତି ମାଗି ସଭା ଛାଡ଼ି ଚାଲିଗଲେ ।

ପରେ ବିଶ୍ୱସ୍ତ ସୂତ୍ରରୁ ଖବର ନେବାରେ ଜଣାପଡ଼ିଲା ଯେ ପ୍ରେମବାରିଧିବାବୁଙ୍କ ପଞ୍ଚମ ପତ୍ନୀ ପ୍ରସୂତି ଭବନରେ ଭୟଙ୍କର ଗର୍ଭ ଯନ୍ତ୍ରଣା ପାଉଛନ୍ତି । ସେ ଦଶଟି ସନ୍ତାନର ଜନନୀ ହେବାକୁ ଯାଉଛନ୍ତି ।

ଏ ଖବର ଶୁଣି ସମସ୍ତେ ହସିଲେ, ଖାଲି ହସିଲେ । ତା'ପରେ ଜନ୍ମ ନିୟନ୍ତ୍ରଣ ଅଫିସର ଶ୍ରୀଯୁକ୍ତ ମଦନ-ମାରଣ ଚୌହାନ ଉଠି ଖଣ୍ଡିକାଶ ମାରି କହିଲେ—"ଉପସ୍ଥିତ ଭଦ୍ରବ୍ୟକ୍ତି ବୃନ୍ଦ ଓ ଭଦ୍ରମହିଳାଗଣ, ଆପଣମାନେ ସମସ୍ତେ ଜାଣନ୍ତି"—"ଶ୍ରେଷ୍ଠ ପରିବାର ହିଁ ସୁଖୀ ପରିବାର । ଘୁଷୁରି ପରି ପଲେ ଛୁଆ ଜନ୍ମକରି କିଛି ଲାଭନାହିଁ । ସେମାନଙ୍କୁ ଉପଯୁକ୍ତ ସୁଷମ ଖାଦ୍ୟ ଯୋଗାଇ ଦିଆଯାଇ ପାରୁନାହିଁ କି ଉପଯୁକ୍ତ ଶିକ୍ଷା ଦିଆଯାଇ ପାରୁନାହିଁ ।"

ସଭା ମଣ୍ଡପର ପ୍ରଥମ ଧାଡ଼ିରେ ବସିଥିବା ଜଣେ ଭଦ୍ର ମହିଳା ଅନୁନାସିକା ସ୍ୱରରେ ବିରକ୍ତ ହୋଇ ତାଙ୍କର ପିଲାମାନଙ୍କୁ କହୁଥିବାର ଶୁଣାଯାଉଥିଲା—"ସୁନୁ, ଟୁନୁ, ଚୁନୁ ଝୁନୁ, ଏକ, ରେକ, ଚେକ,—ତୁମ ମାନଙ୍କ ବାଇରୁ ମୁଁ ମରିଯାନ୍ତି ହେଲେ, ତରିଯାନ୍ତି । ମୋ ପ୍ରାଣକୁ ଖାଇଗଲ । ଯାଉନା ବାପା ସେଠି ଲମ୍ବା ଚୌଡ଼ା ଭାଷଣ ଦେଉଛନ୍ତି, ତାଙ୍କୁ ପଇସା ମାଗିବ ?

ପିଲା,

ସେମାନେ ବୁଝନ୍ତି ବା କ'ଣ ?

ସତକୁ ସତ ସେମାନେ ଯାଇଁ—"ବାପା ପଇସା ଦିଅ, ପଇସା ଦିଅ" କହି ମଦନ ମାରଣ ବାବୁଙ୍କୁ ଘେରି ଗଲେ ।

ମଦନ ମାରଣ ବାବୁ ପିଲାମାନଙ୍କ ମୁଣ୍ଡରେ ଥାପୁଡ଼ଉଛ ଥିଲେ ।

ଘନ ଘନ କରତାଳି ଧ୍ୱନିରେ ସଭାସ୍ଥଳ କମ୍ପି ଉଠିଲା ।

ତା'ପରେ—

ପଡ଼ିଲା ଲେଡ଼ି ଡ଼ାକ୍ତର ପ୍ରିୟତମା ପୁରୋହିତଙ୍କ ପାଳି । ସେ ତାଙ୍କ ନାକି ସ୍ୱରରେ ଥର ଥର କଣ୍ଠରେ ଉଠ କହିଲେ –"ସୁଧୀ ବୃନ୍ଦ ଓ ମାଆ, ଭଉଣୀ ମାନେ, ପୃଥିବୀରେ ମାନବ ସମାଜରେ ଦୁଇ ରକମର କ୍ଷୁଧା ଦେଖାଯାଏ ।

ଗୋଟିଏ ଖାଦ୍ୟ ପଦାର୍ଥର କ୍ଷୁଧା । ଅନ୍ୟଟି ଯୌନ କ୍ଷୁଧା । ବିବାହ ଦ୍ୱାରା ଯୌନ କ୍ଷୁଧାର ନିବୃତ୍ତି ହୁଏ । ସନ୍ତାନ ଉତ୍ପାଦନ ବିବାହ କରିବାର ମୁଖ୍ୟ ଉଦ୍ଦେଶ୍ୟ । ଗୋଟିଏ ଦୁଇଟି ସନ୍ତାନ ହେବା ଭଲ । ନିଜ ଇଚ୍ଛା ମୁତାବକ ସନ୍ତାନ ଜନ୍ମ କରିବା ପାଇଁ ଆଜିକାଲି ନାନା ରକମର ବୈଜ୍ଞାନିକ ପ୍ରଣାଳୀ ଉଦ୍ଭାବନ ହୋଇଛି । ତା' ମଧ୍ୟରେ ଲୁପ୍' ହେଉଛି ସର୍ବୋତ୍ତମ ପ୍ରଣାଳୀ । ପ୍ରତ୍ୟେକ ମା' ଭଉଣୀ ଲୁପ୍ ପିନ୍ଧିବା ଉଚିତ ।"

ଜଣେ ଭଦ୍ର ମହିଳା ଏତିକି ବେଳେ ଉଠି କହିଲେ—"ଆପଣ ସେଦିନ ଆପଣଙ୍କ ପ୍ରାଇଭେଟ୍ କ୍ଲିନିକରେ ଷୋଳଟଙ୍କା ଫିସ ନେଇ ଲୁପ ନ ପିନ୍ଧିବା ପାଇଁ ପରାମର୍ଶ ଦେଇ ଥିଲେନା ?"

ଅନ୍ୟ ଜଣେ ପଚାରିଲେ—"ଆପଣ ଦୁଇଟି ସ୍ୱାମୀଙ୍କୁ ଛାଡ଼ପତ୍ର ଦେଇ ତୃତୀୟ ଥର ପାଇଁ କଣ୍ଟ୍ରାକ୍ଟ ମ୍ୟାରେଜ୍ କରିଛନ୍ତି ନା ?"

ଦୟାକରି କହିବେକି ଆପଣଙ୍କ ତିନି ସ୍ୱାମୀଙ୍କ ଔରସରୁ କେତୋଟି ପିଲା ?

ଆମେ ଶୁଣୁଛୁ ନ'ଟି ଏକଥା କଣ ସତ ?

ଡାକ୍ତର ପ୍ରିୟତମା ଦେବୀ ନିରୁତ୍ତର ହୋଇ ବସି ପଡ଼ିଲେ ।

ଏହାପରେ—

ସ୍ୱୟଂ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନଗଦ ନାରାୟଣ ନରେନ୍ଦ୍ର ମହୋଦୟ ଉଠି ବାଘୁଆ ନିଶକୁ ବାଆଁ ହାତରେ ଆଉଁଷି ଆଉଁଷି କହିଲେ—

ବନ୍ଧୁଗଣ ! ମୋ ପୂର୍ବବର୍ତ୍ତୀ ବକ୍ତାମାନେ ଜନ୍ମ ନିୟନ୍ତ୍ରଣ ବିଷୟରେ ବହୁତ ବୁଝାଇଲେଣି । ମୋର ସେ ସମ୍ପର୍କରେ ବିଶେଷ କିଛି କହିବାର ନାହିଁ । ତେବେ କେବଳ ନାରୀମାନେ ଲୁପ୍ ପିନ୍ଧିଲେ ଚଳିବ ନାହିଁ । ପୁରୁଷମାନଙ୍କୁ ଅପରେସନ ହେବାକୁ ପଡ଼ିବ । ଏଥିପାଇଁ କଷ୍ଟ ଭୋଗିବାକୁ ପଡ଼େ ନାହିଁ କି ପଇସା ଦେବାକୁ ପଡେ ନାହିଁ । ବରଂ ପଇସା ମିଳେ ।

ଏତିକ ବେଳେ ଜଣେ ଦରିଦ୍ର ମଳମୁଣ୍ଡିଆ ଲୋକ ଉଠି ପଚାରିଲା— "ମନ୍ତ୍ରୀ ମହୋଦୟ, ଆପଣ ତ ଅପରେସନ ହୋଇଥିଲେ, ଆପଣଙ୍କ ସ୍ତ୍ରୀ ପୁଣି ଅନ୍ତଃସତ୍ତ୍ୱା ହେଲେ କେମିତି ? ଆପଣ ତାଙ୍କୁ ଅସତୀ ଆଖ୍ୟା ଦେଇ ଘରୁ ତଡ଼ି ଦେଲେ କାହିଁକି ?

ମନ୍ତ୍ରୀ ମହୋଦୟ ସମ୍ଭ୍ରମରେ ସନ୍ତୁଳି ହୋଇଗଲେ । ସାଙ୍ଗେ ସାଙ୍ଗେ ସଭା ଭଙ୍ଗ କରି ଚାଲିଗଲେ । ଲୋକେ କୁହାକୁହି ହେଉଥିବାର ଶୁଣା ଯାଉଥିଲା—"କହି ଦେଉଥାଏ ପରକୁ, ବୁଦ୍ଧି ନ ପଶଇ ଘରକୁ ।"



# ଏକାଦୁଶୀବାବୁଙ୍କ ଏକାଦଶୀ

ଏକାଦୁଶୀବାବୁ ଜଣେ ନାମଜାଦା ଭକ୍ତ, ଏକଥା ସମସ୍ତେ ଜାଣନ୍ତି । ବେକରେ ତୁଳସୀ ମାଳୀ ନାଇ, ଦେହରେ ରାମାନନ୍ଦୀ ଚିତାକାଟି ସବୁବେଳେ ସେ ବକୁଲର ମାଛ ପରି ପାଟି ପାକୁ ପାକୁ କରି, ମାଳ ଗଡ଼ାନ୍ତି ।

ବାଟରେ ହାଟରେ ଚାଲିଗଲାବେଳେ ଝୁଲି ଭିତରେ ହାତ ପୂରାଇ ସେ ବି ମାଳ ଜପନ୍ତି । ମାଛ ମାଂସ ଖାଆନ୍ତି ସିନା, ଜୀବ ପ୍ରତି ତାଙ୍କର ଭାରି ଦୟା । ଝିଣ୍ଟିକାଟିଏ ନିଆଁରେ ପଡ଼ିଗଲେ କି ପିମ୍ପୁଡ଼ିଟିଏ ପାଦରେ ଦଳି ହୋଇଗଲେ ସେ ଅଧ ଘଣ୍ଟାଏ ଚୁ, ଚୁ, ହୋଇ ସମବେଦନା ପ୍ରକାଶ କରନ୍ତି ।

ଛେଳି କଥା ହେଲେ ସେ କିନ୍ତୁ ଶାସ୍ତ୍ର ପୁରାଣ ଉଦ୍ଧାର କରି କହନ୍ତି —"ଜୀବ ମାରିବ ମାଂସ ଖାଇ, ସେ ଜୀବ ବୈକୁଣ୍ଠକୁ ଯାଇ ।"

ସେ ପର ଦ୍ରବ୍ୟକୁ ଲୋଷ୍ଟ୍ରବତ୍ ମନେ କରନ୍ତି ।

ତାଙ୍କୁ କେହି କେହି ଏକାଦଶୀ ବକ କହିଲେ ମଧ୍ୟ ସେ ଯେ ଜଣେ ପରମ ଭକ୍ତ ଏକଥା ସେ ଜାଣେ ହେଲେ ସନ୍ଦେହ ନାହିଁ ।

ସେ ଭକ୍ତି ମାର୍ଗରେ ଆସିବାର କାରଣ ସ୍ୱରୂପ ଲୋକମାନେ ଗୋଟିଏ ମଜାଗପ କହନ୍ତି ।

ହଁ... ...

ହଁ... ... ପ୍ରକୃତରେ ଏକ ମଜାଗପ ।

ଏକାଦୁଶୀ ବାବୁ ଆଗରୁ ଜଣେ ରାଜ କର୍ମଚାରୀ ଥିଲେ । ରଜା ଜଣେ ଗଡ଼ଜାତ ରଜା । ଏକଚ୍ଛତ୍ରିଆ । ଯାହା ବୁଝିଥିବେ ସେୟା । ଯାହାକୁ ଭଲ ପାଇଥିବେ ତା' ସ୍ତ୍ରୀକି ସୁନାଚୁଡ଼ି ପିନ୍ଧାଇ ଦେବେ । ଯାହାକୁ ବିଷ ଦୃଷ୍ଟିରେ ଚାହିଁଥିବେ—ତା' ଘରେ କଳାକନା ବୁଲେଇ ଦେବେ ।

❋

ଦିନକର କଥା ।

ମନ୍ତ୍ରୀ ଆସି ଖବର ଦେଲେ — "ମହିମା, ଏକାଦୁଶୀ ବାବୁ ତାପ୍ପିଂ ପ୍ରଜା ମାନଙ୍କଠାରୁ ସବୁ ରାଜସ୍ୱ ଆଦାୟ କରି ଆତ୍ମସାତ୍ କରି ଦେଇଛନ୍ତି ।"

ରାଜା ଏକଥା ଶୁଣୁ ଶୁଣୁ ହୁକୁମ ଦେଲେ— 'ଏକାଦୁଶୀଆକୁ ଧରିଆଣ ।',

କଟୁଆଳମାନେ ଯାଇଁ ଏକାଦୁଶୀ ବାବୁଙ୍କୁ ଧରିଆଣିଲେ । ରଜା ବନ୍ଦେ କେରଞ୍ଚରେ ପିଟି, ନଅର ଭିତରେ ରହିବାକୁ ଆଦେଶ ଦେଲେ ।

ବଡ଼ ଦୁଃଖରେ ଏକାଦୁଶୀ ବାବୁ କାଳାତିପାତ କଲେ । ଏକାଦୁଶୀ ବାବୁଙ୍କୁ ଛାଡ଼ିଦେବା ପାଇଁ ଯିଏ ଯେତେ ରକମର ବୁଝାଇଲେ ମଧ୍ୟ ରଜା କାହାରି କଥା ଶୁଣିଲେ ନାହିଁ ।

ଯୋଗକୁ ବ୍ରହ୍ମ ଖଣ୍ଡେ ନାହିଁ ।

ଦିନେ ରଜାଙ୍କର କେତେଜଣ ବନ୍ଧୁ ଆସିଲେ । ଖାନସମା ମନ ପ୍ରାଣଢାଳି ବ୍ୟଞ୍ଜନ ପ୍ରସ୍ତୁତ କଲା । ନିଆଁ ପାଣି କଥା । ଡାଲି ଟିକେ ପୋଡ଼ି ଗଲା ।

ଗୃହୁଣିଆ ବୃଷ୍ଟି ସାରିଲା ପରେ, ଖାନସମା ପ୍ରମାଦ ଗଣିଲେ । ରଜାଙ୍କ କାନକୁ ଏକଥା ଗଲା । ରଜା ଉତପଣ ଚମ ପର ଫଅଁ, ଫଅଁ ହେଲେ ।

ଏକାଦୁଶୀ ବାବୁ କହିଲେ—"ସ୍ୱାମୀ ମୁଁ ନିମିଷକରେ ସୁ ସ୍ୱାଦୁ ଡାଲିକରି ଦେବି ।"

ରଜା କରି ବୋଲି ଆଦେଶ ଦେଲେ ।

ଏକାଦୁଶୀ ବାବୁ ସାଙ୍ଗେ ସାଙ୍ଗେ ପୋଡ଼ା ଡାଲିରେ ଅଧସେରେ ଗୁଆ ଘିଅ ଗରମ କରି ଢାଳିଦେଲେ ।

ମଣୋହି ବେଳେ ରଜା ଡାଲି ଦୁଇଥର ମାଗି ଖାଇଲେ । ରଜାଙ୍କ ବନ୍ଧୁମାନେ ବିଦାହୋଇ ଗଲାପରେ, ରଜା ଏକାଦୁଶୀ ବାବୁଙ୍କୁ ଡାକି କହିଲେ—"ତୁମେ ବୋଧହୁଏ ପ୍ରଜାଙ୍କଠାରୁ ରାଜସ୍ୱ ଆଦାୟ କରି ଖାଇବାରେ ସାରି ଦେଇଛ ?" ଏକାଦୁଶୀ ବାବୁ କହିଲେ — "ଆଜ୍ଞା ହଁ ।"

ରଜା କହିଲେ —"ଯାଅ ଆଜଠାରୁ ତୁମେ ମୁକ୍ତ ହେଲ । ଦେବୋତ୍ତର ସମ୍ପତ୍ତି ସବୁ ବୁଝା ସୁଝା କରିବା ।"

ସେଣ୍ଟକ ତ ନୁହେଁ—

ତାଙ୍କ ଫୁଲ ଦେଇ କନ୍ୟା ମୃଦୁ ସୁଲ୍ଲୀକ ମଧ୍ୟ ଏକାଦଶୀ ବାବୁଙ୍କୁ ବଶକରି ଦେଲେ । ମୃ ଦୁସୁଲ୍ଲୀକ ନଅର ଭିତରେ ସମସ୍ତେ ଡାକନ୍ତି ଅଖାଇ ନାମ ।"

ମୃଦୁସୁଲ୍ଲୀ ।

ପ୍ରକୃତରେ ମୃଦୁସୁଲ୍ଲୀ । ସେ ଏକାଦଶୀ ବାବୁଙ୍କର ହାତ ଧରିଲା ଦିନୁ ଆଠଟିର ଜନନୀ ହେଲେଣି ।

ଏକାଦଶୀ ବାବୁ ପାର୍ଥିବ ଜଞ୍ଜାଳରେ ଘାଣ୍ଟି ନହେବା ପାଇଁ ଅନ୍ୟ ମାନଙ୍କୁ ପ୍ରବର୍ତ୍ତାଇଲେ ମଧ୍ୟ ନିଜେ ପ୍ରତିବର୍ଷ ଗୋଟିଏ ସନ୍ତାନର ଜନକ ହେବାକୁ ବାଧ୍ୟ ହୁଅନ୍ତି ।

ରାଜପଥରେ ପିଲାମାନେ ଏକାଦଶୀ ବାବୁଙ୍କ ପଛରେ କ୍ୟୁ-କରି ଚାଲିଥିଲା ବେଳେ ମନେହୁଏ ସଗର ବଂଶ ପୃଥିବୀ ପୃଷ୍ଠକୁ ପୁଣି ଫେରିଲେ କି ?

ତେବେ—

ଏକାଦଶୀ ବାବୁ ଜଣେ ଭାରି ପାଗଳ ଲୋକ । ତାଙ୍କ ସ୍ତ୍ରୀ ମୃଦୁସୁଲ୍ଲୀ ଦେବୀ ଖୋଲ୍ ବଜାରରେ ଗୁଣ୍ଡରେ ହାତ ବାଡେଇ ଅଣ୍ଟାରେ ଲୁଗା ବାନ୍ଧି ଅନେକ ଥର କହିବାର ଶୁଣାଯାଏ—

"ମୋ' ଗେରସ୍ତ ଗୋଟା ଲୋକ, ପୁଣି ଆଉ ଗୋଟା କଏ ଲୋକ ? ଘଣ୍ଟେ ଯଦି ମତେ ସହିପାରୁ ନାହିଁ, ତେବେ ମୋର ସଉତୁଣୀ ହେଉନା ? ଭଲ ନାଇବ, ଭଲ ଖାଇବ; ଭଲ ପିନ୍ଧିବ ।"

ମୃଦୁସୁଲ୍ଲୀ ଦେବୀ କମ୍ ଲୋକ ନୁହନ୍ତି । ତାଙ୍କର ଏଭଳି ନାମ ହେବାର ମଧ୍ୟ ତାତ୍ପର୍ଯ୍ୟ ରହିଛି । ମଦ ବୁଲ୍ଲୀ ପାଖରେ ସେ ଜନ୍ମ ହୋଇ ଥିବାରୁ ତାଙ୍କ ନାମ ଦିଆହୋଇଛି ମୃଦୁସୁଲ୍ଲୀ । ସେ ଭାରି ବୁଦ୍ଧିମତୀ ।

ମହାପ୍ରସାଦକୁ ଗୁଡ ଚଣା ପରି ସେ ମନେକରନ୍ତି । ନିଜର ସ୍ୱାର୍ଥ ହାସଲ ପାଇଁ ବାପର ଝିଅ, ପୁଅର ଝିଅ, ମା'ର ଝିଅ, ବୋହୂର ଝିଅ ହୋଇ ପଡନ୍ତି । କେହି କାହାରି କଥା ଜାଣି ପାରନ୍ତି ନାହିଁ ।

ଏକାଦଶୀ ବାବୁ ମୃଦୁସୁଲ୍ଲୀଙ୍କ ପରି ସ୍ତ୍ରୀ ପାଇ ନିଜକୁ ସୌଭାଗ୍ୟବାନ ବୋଲି ମନେକରନ୍ତି ।

ଏକାଦୁଶୀ ବାବୁ ପ୍ରତି ମାସରେ ଏକାଦଶୀ କରନ୍ତି । ଏକାଦଶୀ ବୋଇଲେ ଏକାଦଶୀ ଭଳି ଏକାଦଶୀ ।

ଏକାଦଶୀ ଦିନ ଛପନ ପ୍ରକାର ଭୋଗର ବ୍ୟବସ୍ଥା ହୁଏ । ସୂର୍ଯ୍ୟୋଦୟଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ଭୋଗ ଚାଲିଥାଏ । ପ୍ରତି ଭୋଗକୁ ଉଦରକୁ କ୍ଷେପଣ କରନ୍ତି ଏକାଦଶୀ ବାବୁ ।

ପୁଣି—

କେତେ କେତେ ଏମିତି ହୁଏ, ଏକାଦଶୀ ଦିନ ଯଦି କୌଣସି ଠାରୁ ବଡ଼ ମାଛ ଆସେ ବା ଖାସି କଟା ହେବାର କଥା ଏକାଦୁଶୀ ବାବୁ ଉଦ୍‌ଯାପନ କରନ୍ତି ।

ମାଛ ଆଉ ମାଂସ ସେ ନିହାତି କମରେ ଦୁଇସେର ଖାଆନ୍ତି, ତଥାପି—

ଏକାଦୁଶୀ ବାବୁ ଜଣେ ଧର୍ମ ପରାୟଣ ବ୍ୟକ୍ତି । ତାଙ୍କ ସହ-ଧର୍ମିଣୀ ମୃଦୁସ୍ମିତା ଦେବୀ ବି ତଦ୍ରୂପ ଭକ୍ତି ପରାୟଣ ମହିଳା ।

ବାର ମାସରେ ତେର ଓଷା ସେ କରନ୍ତି ।

ଦିନେ ଦିନେ ଓଷାରେ ଏଭଳି ହୁଏ ଯେ ମୃଦୁସ୍ମିତା ଦେବୀ ଖାଉଁ ଖାଉଁ ସବୁ ଭୋଗରାଗ ଖାଇଦିଅନ୍ତି । ପିଲାମାନେ ଭୋକରେ ଆଉଟି ପାଉଟି ହୋଇ ସମୟ କଟାନ୍ତି ।

ପଖାଳ ଭାତ, ଶୁଖୁଆ ପୋଡ଼ାରେ ପେଟଭରି ରହିଥାଏ । ଲୋକ ଜାଣିବାକୁ କଅଣ ନା, ଅଖାଇ ନାମ କରିଚ ଓଷା ।

ଦିନ ପରେ ଦିନ ଗଡ଼ି ଚାଲିଲା ।

ପିଲାମାନେ ବଡ଼ ହୋଇଗଲେ ।

ସମସ୍ତେ ଜିଦ୍ ଧରିଲେ ଆମେ ଏକାଦୁଶୀ କରିବୁ । ଏକାଦୁଶୀ ବାବୁ ପିଲାମାନଙ୍କୁ ବହୁତ ବୁଝାଇଲେ—

"ତୁମେମାନେ ଏକାଦୁଶୀ କରିପାରିବ ନାହିଁ । ଏହା ଭାରି କଷ୍ଟ କାମ । ଉପାସ ରହି ପାରିବ ନାହିଁ ।"

ପିଲାମାନେ ସମସ୍ୱରରେ ସମସ୍ତେ ଏକ ଜିଦ୍ ଧରି କହିଲେ— ହଁ ବାପା ଆମେ ଉପାସ ରହିପାରିବୁ, ଆପଣଙ୍କପରି ଏକାଦଶୀ କରିପାରିବୁ ।

ଏକାଦୁଶୀ ବାବୁ ବାଧ ହୋଇ ଏକାଦଶୀ ଛାଡ଼ିଲେ । ମୃଦୁସୁଲ୍ଲା—ଦେବୀ ଯେତେବେଳେ ଓଷା କରିବାକୁ ବାହାରିଲେ ସେତେବେଳେ ପିଲାମାନଙ୍କୁ ପାଖକୁ ଡାକି ଏକାଦୁଶୀ ବାବୁ କହିଲେ—"ମୋତେ ଯେମିତି ଏକାଦଶୀ ଛଡ଼ାଇଲ, ସେମିତି ତୁମ ବୋଉର ଓଷା ଛଡ଼ାଅ, ନଚେତ୍ ମୁଁ ପୁଣି ଏକାଦଶୀ କରିବି ।"

ଏଥର ପିଲାମାନେ ଯାଇଁ ମା'ଙ୍କ ନିକଟରେ ହାଜର ହେଲେ । କହିଲେ—"ବୋଉ, ତୁ ଯଦି ଓଷା କରୁ ଆମେ ବି କରିବୁ ।" ମୃଦୁସୁଲ୍ଲା ଦେବୀ ବିରକ୍ତ ହୋଇ କହିଲେ—"ମୁଁ ଆଉ ସେ ନିଆଁ ଲଗା ଓଷା କରିବି ନାହିଁ ।"

ମୃଦୁସୁଲ୍ଲା ଦେବୀ ଓଷା ଛାଡ଼ିଲା ଦିନରୁ ଆଉ ଏକାଦଶୀ ବାବୁଙ୍କ ସାଙ୍ଗରେ ତାଙ୍କର ପଟୁନାହିଁ । ଦେଢ଼ଶୁର ଭାଇବୋହୂ ଭଲ କଥାବାର୍ତ୍ତା ହୁଅନ୍ତି ।

ମୃଦୁସୁଲ୍ଲା ଦେବୀ ଯେମିତି ରାଗରେ ଗର ଗର ସର ସର ହୁଅନ୍ତି, ଏକାଦୁଶୀ ବାବୁ ସେମିତି ତମ୍ପର ରାଗରେ ଫଅଁ ଫଅଁ ହୁଅନ୍ତି ।

ଦିନେ ସ୍ୱାମୀ ସ୍ତ୍ରୀଙ୍କର ମିଳନ ହେଲା । ଏକାଦୁଶୀବାବୁ ପଚାରିଲେ—"ତୁମେ କ'ଣ ସତରେ ଓଷା କର ?" ମୃଦୁସୁଲ୍ଲା ଦେବୀ ଓଲଟି ପଚାରିଲେ—"ଆଉ ତୁମେ ?"

ଏକାଦୁଶୀବାବୁ କହିଲେ—"ଚୁପ୍ ଚୁପ୍, ଆଉ କିଛି କୁହନା, ପିଲାମାନେ ଅଛନ୍ତି ଶୁଣିବେ ।"

ଏତିକିବେଳେ ଏକାଦୁଶୀବାବୁଙ୍କର ଜଣେ ପିଲାଦିନର ସାଙ୍ଗ ଘରଭିତରକୁ ପଶିଆସି କହିଲେ—"ହଇହେ ସାଙ୍ଗ, ତୁମେ ତ ମୁଡ଼ିଟିଭଳି ହୋଇଥିଲ, ଏବେ କିଣ ଚୂଡ଼ାଭଳି ଦେଖାଗଲଣି ? କ'ଣ ଏକାଦଶୀ ଛାଡ଼ି ଦେଲଣି କି ?

ସାଙ୍ଗଙ୍କ କଥାରେ ସମସ୍ତେ ଏକାଥରକେ ହସିଉଠିଲେ ।



# ପ୍ରେସିଡେଣ୍ଟଙ୍କ ସ୍ୱାମୀ

ରସିକଶେଖର ପ୍ରାଣନାଥ ବାବୁଙ୍କୁ ଆପଣ ଜାଣିଥିବେ ବୋଧହୁଏ । ତାଙ୍କୁ ଯଦ୍ୟପି କଳଷଠୀ ବାଷଠି ବର୍ଷ ହେଲାଣି; ତଥାପି ସେ ଏବେ ମନରେ ପିଲା । ସେ ଏବେବି ନିଜକୁ ନିଜେ ମନେ କରନ୍ତି, କଳୁରବେଶରେ କୃଷ୍ଣଗାନ । ପାଚିଲା ଯୌବନ କଅଁଳର ପାଚିଲା କୃଷକ ।

କଳାକୃଷ୍ଣ କମଳ ଆଖିଙ୍କର ସେ ପରମ ଭକ୍ତ । ପ୍ରତିଦିନ ସକାଳେ ଓ ସନ୍ଧ୍ୟାବେଳେ ସେ ଟେଳାଟିଏ କଳାକୃଷ୍ଣ ନ ପକାଇଲେ ତାଙ୍କ ଦେହରେ ଇନଫ୍ଲୁଏଞ୍ଜାର ସବୁ ଲକ୍ଷଣ ପ୍ରକାଶ ପାଇଯାଏ ।

ତେବେ ସେ ଜଣେ ପ୍ରଥମ ଶ୍ରେଣୀର ନାଗର । ପ୍ରତିଦିନ ଧଳା ବାଳକୁ କଳା କରିବାପାଇଁ କ୍ଲେମା ବ୍ୟବହାର କରନ୍ତି । ମୁହଁରେ ବସ୍ଲେଲିନ ମାଖି ଚମକୁ ମସୃଣ କରନ୍ତି । ଦିନକୁ ନହାତି କମ୍‌ରେ ଦଶଥର ମୁଣ୍ଡର ବାଳକୁ କୁଣ୍ଡାଇବା ପାଇଁ ଗଛ ଅଇନା ପାଖକୁ ଯାଆନ୍ତି । ଘରଛାଡ଼ି ଯେବେ ବନ୍ଧୁ ବାନ୍ଧବ ଘର ବା କୋର୍ଟ କଚେରୀକି ଯା'ନ୍ତି, ତେବେ ପକେଟରେ ଗ୍ଲେଟ ପାନିଆଁ ଓ ଅଇନା ଗୋଟେ ରଖିଥାନ୍ତି । ରାତିରେ ଶୋଇଲାବେଳେ ବି ମୁଣ୍ଡ କୁଣ୍ଡାଇ ଶୁଅନ୍ତି ।

ତାଙ୍କୁ ଯଦି କେହି ରାତିରେ କାହିଁକି ମୁଣ୍ଡ କୁଣ୍ଡାନ୍ତି ବୋଲି ପ୍ରଶ୍ନ କରେ, ସେ ଉତ୍ତର ଦେଇ କହନ୍ତି—"ଆୟୁ ବଢ଼େ ।"

ପ୍ରାଣନାଥ ବାବୁଙ୍କୁ ପ୍ରଜାପତି ନିଶ ଭାରି ମାନେ ।

ଏହି ନିଶକୁ କାଟିବାପାଇଁ ତାଙ୍କ ଦ୍ୱିତୀୟ ପକ୍ଷ ସ୍ତ୍ରୀ ଶ୍ରୀମତୀ ଚୌଖମ୍ବା ଦେବୀ ଅନେକଥର କହିଲେଣି, ମାତ୍ର ପ୍ରାଣନାଥ ବାବୁ କାଟନ୍ତି ନାହିଁ । ତାଙ୍କର ପିଲାଦିନୁ ନିଶ ପ୍ରତି ଭାରି ସଉକ । ତାଙ୍କ ଅଜା ରଖିଥିଲେ ନିଶ । ତାଙ୍କ ବାପା ରଖିଥିଲେ ନିଶ । ସେ ବି ପରମ୍ପରାକୁ ସମ୍ମାନ ଦେଖାଇ ରଖିଛନ୍ତି ନିଶ ।

ବିଖ୍ୟାତ ପକ୍ଷ ସ୍ତ୍ରୀ ଘରକୁ ଆଣିଲେ ସଂସାରରେ ସମସ୍ତେ ଯେମିତି ତଥୈବଚ ଅବସ୍ଥାରେ ପଡ଼ନ୍ତି, ସେମିତି ପଡ଼ିଛନ୍ତି ପ୍ରାଣନାଥ ବାବୁ ।

ସୁନ୍ଦରୀ, ଷୋଡ଼ଶୀ, ମନ୍ଦାର ଅଧରା, ମରାଳ ଗମନା, ଖଞ୍ଜରୀଟ ନୟନା, ଭରା ଯୌବନା, ଯାମଳ ଭୂଧର-ନିଭ-ପୟୋଧରା ଶ୍ରୀମତୀ ଚୌଖମ୍ବା ଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ପ୍ରାଣନାଥ ବାବୁ ତାଙ୍କ ପ୍ରାଣପଣେ ଚେଷ୍ଟା କରନ୍ତି ।

ତାଙ୍କୁ ହସ ନ ମାଡୁଥିଲେ ସେ ହସନ୍ତି । ତାଙ୍କୁ ନିଦ ମାଡୁଥିଲେ ବି ସେ ଚେଇଁ ରହନ୍ତି । ତାଙ୍କୁ ଭୋକ ନ କରୁଥିଲେ ବି ସେ ବାଧ୍ୟ ହୋଇ ଖାଆନ୍ତି । ନାଚ ତାମସା ଦେଖିଯିବାକୁ ତାଙ୍କର ଇଚ୍ଛା ନ ଥିଲେ ବି ସେ ଯାଆନ୍ତି । 'ବୁଢ଼ା' ଅପବାଦରୁ ତ୍ରାହି ପାଇବାପାଇଁ ଅଣ୍ଟା ଭାଙ୍ଗି ପଡୁଥିଲେ ବି ଅଣ୍ଟା ସିଧା କରି ଚାଲନ୍ତି । ସେ ବରାବର କବିରାଜଙ୍କଠାରୁ କାମିନୀ-ଦର୍ପ-ଗଞ୍ଜନ ମୋଦକ ସେବନ କରନ୍ତି ।

ସିଲ୍କ ପଞ୍ଜାବୀ ମଡ଼ାଇ ପିନ୍ଧାକୁଞ୍ଚ ହାତରେ ଧରି, ଲେଭେଣ୍ଡର ମଥାରେ ଲଗାଇ, ସିଂହ ବାଡ଼ିଟି ଧରି ବଲ୍‌ଡ୍ୟାନ୍ସ ଭଙ୍ଗୀରେ ଗାଆଁ ଦାଣ୍ଡ ମଝିରେ ନନ୍ଦନନ୍ଦନ ଗୋପୀ ଜୀବନ ବ୍ରଜ ଦୁଲାଳ କୃଷ୍ଣଚନ୍ଦ୍ରଙ୍କ ପରି ଢଳଢଳ ଯେତେବେଳେ ଚାଲନ୍ତି, ସେତେବେଳେ କନ୍ଦର୍ପପୁର ଗାଆଁର ଚଗଲା ଟୋକାଯାକ ପାଟିରେ ହୁଇସିଲ ମାରି ବନମାଳୀଙ୍କ "ଶ୍ୟାମ ନାଗର ହେ ଏ ବେଶ ହୋଇବ ନାହିଁ, ଏ ବେଶ ହୋଇଲେ ପାଷାଣ ତରଳେ ଯୁବତୀ ବଞ୍ଚିବେ କାହିଁ ।" ଗୀତଟି ବୋଲି ତାଳିମାରି ଖପରା ଡେଇଁ ଡେଇଁ ନାଚ ଯାଆନ୍ତି । ତେବେ—

ପ୍ରାଣନାଥ ବାବୁ ନିଜର ପତ୍ନୀ ସୁଶ୍ରୀ ଚୌଖମ୍ବା ଦେବୀଙ୍କ ପାଇଁ ବଡ଼ଗର୍ବ ଅନୁଭବ କରନ୍ତି । ପ୍ରାଣନାଥ ବାବୁ ଦେଖିବାକୁ ବାଙ୍ଗର ହେଲେ କ'ଣ ହେବ, ତାଙ୍କ ମଗଜଟା ଭାରି ବଡ଼ । ସେ ବେଳକାଳ ଜାଣି କାର୍ଯ୍ୟ କରନ୍ତି । ମେଘ ଯୁଆଡ଼କୁ ହୁଏ, ଛତା ସେଆଡ଼କୁ ଦେଖାନ୍ତି । ମୋଟ ଉପରେ ତାଙ୍କୁ ଅନେକ ଲୋକ ମୋଟା ବୁଦ୍ଧିଆ ବୋଲି କହିଲେ ମଧ୍ୟ ତାଙ୍କର ସୂକ୍ଷ୍ମ ବୁଦ୍ଧିର ଅନେକ ସମୟରେ ଆଶ୍ଚର୍ଯ୍ୟଜନକ ।

ଭାରତରେ ଯେତେ ସ୍ୱୀକୃତ ରାଜନୈତିକ ଦଳ ଅଛି । ସେ ସବୁ ଦଳର ଗୁମର ଜାଣନ୍ତି । ସେ ସବୁ ଦଳର ମେମ୍ବର ହୋଇ, କଚ୍ଛାବଦଳ ରାଜ୍ୟପରେ ଦଳ ଛାଡ଼ି ଚାଲି ଆସନ୍ତି ।

ତାଙ୍କ ଅପେକ୍ଷା ତାଙ୍କ ସହଧର୍ମିଣୀ ଶ୍ରୀମତୀ ଶ୍ବେତଶମ୍ପା ଦେବୀ ଆହୁରି ବୁଦ୍ଧିମତୀ । ସେ ଜାଣନ୍ତି ନିଜର ଢୋଲ ନିଜେ ନ ପିଟିଲେ ଅନ୍ୟ କେହି ତାର ଦାୟିତ୍ୱ ନେବେ ନାହିଁ । ନିଜକୁ ବଡ଼ କରିବାକୁ ହେଲେ ନିଜର ପ୍ରଚାର ନିଜେ କରିବାକୁ ହେବ ।

ଏ ଯୁଗ ହେଉଛି ପ୍ରଚାର ଯୁଗ । ଯେ ଯେତେ ପ୍ରଚାର କରିପାରିଲା ସେ ସେତେ ବାଜି ନେଇପାରିଲା । ଯେ ଯେତେ କଥା ବୋଲି ପାରିଲା, ସେ ସେ ସେତେ ପଦୋନ୍ନତି ବଳି ପାଇଲା ।

ତେଣୁ—

ପ୍ରାଣନାଥ ବାବୁ ବିଶ୍ୱବିଦ୍ୟାଳୟର ଦ୍ୱାର ନ ମାଡ଼ି ଥିଲେ ହେଁ ତାଙ୍କୁ ଶ୍ରୀମତୀ ଶ୍ବେତଶମ୍ପା ଦେବୀ ଡକ୍ଟର ବୋଲି ଡାକନ୍ତି । ଲେଖୁ ଲେଖୁ କରଣ ହେଲାପରି, ଶ୍ରୀମତୀ ଶ୍ବେତଶମ୍ପା ଦେବୀ ନିଜର ସ୍ୱାମୀଙ୍କି 'ଡକ୍ଟର' ଡାକୁ ଡାକୁ, ଗଳି ଅଇଲି, ସାଇ ପଡ଼ିଶା, ବନ୍ଧୁ ବାନ୍ଧବ, ଭାଇ ବିରାଦର, ଗଡ଼ାଲିକା ପ୍ରବାହରେ ପ୍ରାଣନାଥ ବାବୁଙ୍କୁ ସମସ୍ତେ ଡାକିଲେ "ଡକ୍ଟର" ।

ପ୍ରକୃତରେ ଆମ ଦେଶରେ ଏମିତି ଲୋକ ଅଛନ୍ତି, ଅମର କୋଷ ଦେଖି ନ ଥିବା ଲୋକ ବୋଲନ୍ତି ପଣ୍ଡିତ । ଶାସ୍ତ୍ରର ନାଆଁ ନ ଜାଣି ବୋଲନ୍ତି ଶାସ୍ତ୍ରଜ୍ଞ । ସାହିତ୍ୟର ସ ଅକ୍ଷର ନଜାଣି ବୋଲନ୍ତି ସାହିତ୍ୟିକ । ଇତିହାସର ପୃଷ୍ଠା ନ ଓଲଟାଇ ଥିଲେ ବି ବୋଲନ୍ତି ଐତିହାସିକ ।

ସେମିତି—

ଶ୍ରୀମତୀ ଶ୍ବେତଶମ୍ପା ଦେବୀ ଆଦରରେ ନିଜର ସ୍ୱାମୀଙ୍କି ଭାବନ୍ତି 'ଡକ୍ଟର' ।

ସେଥିରେ କ୍ଷତି ଅଛି କ'ଣ ?

ମଜାର କଥା ଯେ ପ୍ରାଣନାଥ ବାବୁ ସେମିତି ନିଜର ପ୍ରାଣପ୍ରିୟା ପ୍ରିୟତମା ପତ୍ନୀଙ୍କି ଡାକନ୍ତି—"ଅୟି ପ୍ରିୟା ମତ ପ୍ରାଣ ଉଲ୍ଲାସିନୀ ସୁଶ୍ରୀ ଶ୍ବେତଶମ୍ପେ" ଶ୍ରୀମତୀ ଶ୍ବେତଶମ୍ପା ଦେବୀଙ୍କ ଚିତ୍ତ କୁଣ୍ଢେମୋଟ ହୋଇଯାଏ ।

ନିଜର ସ୍ୱାମୀ ମୁଖରୁ ପ୍ରଶଂସା ଶୁଣିଲେ କେଉଁ ଶାଢ଼ୀ ପିନ୍ଧା ପିଢ଼ ଆନନ୍ଦରେ ବିହ୍ୱଳା ହୁଏ ? ମଣିଷ ମାତ୍ରେ ପ୍ରଶଂସା ପ୍ରିୟ ।

ଶ୍ବେତଶମ୍ପା ଦେବୀ ପ୍ରାଣନାଥ ବାବୁଙ୍କ ନିକଟରେ ଠିଆ ହେଲେ ନାତୁଣୀ ଭଳି ଦିଶନ୍ତି । ନ ଚିହ୍ନିଲା ଲୋକେ ଅନେକ ସମୟରେ ପ୍ରାଣନାଥଙ୍କୁ ପ୍ରଶ୍ନ କରନ୍ତି—"ସେ କ'ଣ ଆପଣଙ୍କ ନାତୁଣୀ ।"

ପ୍ରାଣନାଥ ବାବୁ ନାସ୍ତିସୂଚକ ମୁଣ୍ଡ ହଲାନ୍ତି ।

ପ୍ରଶ୍ନକର୍ତ୍ତା ଆଶ୍ଚର୍ଯ୍ୟ ହୋଇ ଘଡ଼ିଏ ପ୍ରାଣନାଥ ବାବୁଙ୍କୁ ଓ ଚୌଖମ୍ବା ଦେବୀଙ୍କୁ ଚାହାନ୍ତି । ତାପରେ କିଛି ମନ୍ତବ୍ୟ ଦେଇ ଚାଲି ଯାଆନ୍ତି ।

ଚୌଖମ୍ବା ଦେବୀ ନିଜର ବୁଦ୍ଧି ବଳରେ ଘର ସଂସାର ଚଳାନ୍ତି । ପାଞ୍ଚ ସାତଟି ପିଲାଙ୍କର ଲାଳନ ପାଳନ କରନ୍ତି ।

ଏସବୁ ପିଲାଗୁଡ଼ିକ ତାଙ୍କ ସ୍ୱର୍ଗତଃ ସଉତୁଣୀ ହଗୁରୀ ଦେବୀଙ୍କର ।

ପିଲାଗୁଡ଼ିକ କିନ୍ତୁ ଭାରି ଭଲ ।

ଚୌଖମ୍ବା ଦେବୀଙ୍କୁ ଭାରି ଭେନନ୍ତି । ଚୌଖମ୍ବା ଦେବୀ ବି ପିଲା ମାନଙ୍କୁ ଘଡ଼ିଏ ନ ଦେଖିଲେ ଯୁଗପରି ମଣନ୍ତି । ସେ ସବୁକାମ କରି ବି, ପୁନଃପୁନ ପ୍ରେସିଡେଣ୍ଟ ଦାୟିତ୍ୱ ବହନ କଲେ ।

ପ୍ରାଣନାଥ ବାବୁ ମନରେ ସିନା ପିଲା, ଦେହରେ କିନ୍ତୁ ଜରାଗ୍ରସ୍ତ । ଶ୍ରୀମତୀ ଚୌଖମ୍ବା ଦେବୀ ପ୍ରେସିଡେଣ୍ଟ ହେଲା ଦିନରୁ ପ୍ରାଣନାଥ ବାବୁ ନିଜକୁ ଜଣେ ଛୁଆଳସିଂ ନବାବ ଭଳି ମନେ କରନ୍ତି ।

ସେ ସବୁବେଳେ ପିଣ୍ଡା କଣରେ ବସି ଗୋଡ଼ ହଲାଉଥାନ୍ତି । କେହି ଆସି ଚୌଖମ୍ବା ଦେବୀଙ୍କୁ ଖୋଜିଲେ ପ୍ରାଣନାଥ ବାବୁ ପଚାରନ୍ତି—

"କାହାକୁ ଖୋଜୁଛନ୍ତି ?

ପ୍ରେସିଡେଣ୍ଟ ଅଛନ୍ତି ?

"କଣ ଦରକାର ଅଛି ?"

"ସେ କାହାନ୍ତି ? ତାଙ୍କଠାରେ ଦରକାର ଅଛି ।"

ପ୍ରାଣନାଥ ବାବୁ ଛାତିରେ ହାତ ବାଡ଼େଇ କହନ୍ତି— "ମୋତେ କହନ୍ତୁ । ମୁଁ ପରା ପ୍ରେସିଡେଣ୍ଟଙ୍କ ସ୍ୱାମୀ ।"

ଚୌଖମ୍ବା ଦେବୀଙ୍କୁ ଖୋଜୁଥିବା ଲୋକ ତୁନି ହୋଇ ଚାଲିଯାଆନ୍ତି ।

ଚୌଖମ୍ବା ଦେବୀ ଘରକୁ ଫେରି ଏକଥା ଶୁଣି ଦୁଃଖିତା ହୁଅନ୍ତି ।

ଦିନପରେ ଦିନ ଗଡ଼ିଯାଏ ।

*

ସୌଖମ୍ବା ଦେବୀଙ୍କ ନାରୀତ୍ୱ ମାତୃତ୍ୱ ପାଇଁ କାନ୍ଦି ଉଠେ । ସେ ସନ୍ତାନଟିଏ ପାଇବା ପାଇଁ ତୀର୍ଥ ଭ୍ରମଣରେ ଯିବାକୁ ପ୍ରାଣନାଥ ବାବୁଙ୍କୁ ବଳାନ୍ତି ।

ପ୍ରାଣନାଥ ବାବୁଙ୍କର ମଲ୍ଲ କଙ୍କଡ଼ା ଲେଉଟାଇବାକୁ ବଳ ନ ଥିଲେ ବି ସେ ସୌଖମ୍ବା ଦେବୀଙ୍କୁ ନିଜର ଇଚ୍ଛା ବିରୁଦ୍ଧରେ ସମ୍ମତି ପ୍ରଦାନ କରନ୍ତି । "ପାଖରେ ଶୁଏ, କାନରେ କହେ, ତା'କଥା କି ଅନ୍ୟଥା ହୁଏ ?"

ତୀର୍ଥ ଭ୍ରମଣରେ ବାହାରନ୍ତି ସ୍ୱାମୀ ସ୍ତ୍ରୀ ଦୁହେଁ । ପିଲାମାନେ ରହନ୍ତି ଜଣେ ଆତ୍ମୀୟଙ୍କ ନିକଟରେ । ବାଟରେ ସୌଖମ୍ବା ଦେବୀଙ୍କର ସ୍ତ୍ରୀ ଲକ୍ଷଣର ବିଲୋପ ଘଟେ । ବୁକୁର ସ୍ତବକ ଉଭେଇ ଯାଏ । ନିଶ ଉଠେ ।

ରସିକ ଶେଖର ମହା ଅଡୁଆରେ ପଡ଼ନ୍ତି । ସେ ତୀର୍ଥ ଭ୍ରମଣ କରୁ କରୁ ଦିଲ୍ଲୀରେ ପହଞ୍ଚନ୍ତି । ଉଇଲିଙ୍ଗଡନ୍ ହସପିଟାଲରେ ସୌଖମ୍ବା ଦେବୀଙ୍କୁ ଚିକିତ୍ସା ପାଇଁ ଭର୍ତ୍ତି କରନ୍ତି ପ୍ରାଣନାଥ ବାବୁ ।

ମାସେ କାଳ ଚିକିତ୍ସା ପରେ ଆଉ ସୌଖମ୍ବା ଦେବୀଙ୍କର ସ୍ତ୍ରୀତ୍ୱ ଫେରିଲା ନାହିଁ । ବରଂ ସେ ପୁରାପୁରି ପୁରୁଷ ପାଲଟିଗଲେ ।

ଦୀର୍ଘ ବର୍ଷମାସ ପରେ ଯେତେବେଳେ ସ୍ୱାମୀ ସ୍ତ୍ରୀ ଦୁହେଁ ଯାକ କନ୍ଦର୍ପପୁରକୁ ଫେରିଲେ ସେତେବେଳେ ପିଲାମାନେ ଦଉଡ଼ି ଆସି ପଚାରିଲେ—"ବାପା ବୋଉ କାହିଁ ?

ପ୍ରାଣନାଥ ବାବୁ ଅଙ୍ଗ୍ ଅଙ୍ଗ ହୋଇ କହିଲେ—

"ବୋ···ଉ···ହିଁ·····ହିଁ···

ସେହି ପରା ବୋଉ ।"

ପିଲାମାନେ କହିଲେ—ନା ବାପା, ସେ ଆମ ବୋଉ ନୁହେଁ, ସେ ଆଉ ଜଣେ କିଏ ?"

ସୌଖମ୍ବା ଦେବୀ ପିଲାମାନଙ୍କୁ କୋଳ କରି କହିଲେ—ହଁ, ହଁ, ମୁଁ ତୁମର ବୋଉ, ସେ ତୁମର ବାପା ।

# ମଠ ଆଉ ମାଠ

ଗୋରେଖ ମଠକୁ ଜଇପୁରଠାରୁ କେରକେରା ଯାଏ ସବୁ ଗାଆଁର ଲୋକମାନେ କହନ୍ତି ଗୋରେଖା ମଠ ।

ନାଥ ଧର୍ମର ପ୍ରଚାରକ ଗୋରେଖ ନାଥ ଏଠାକୁ ମୋଟା କମ୍ବଳ ଘେନି ଆସି, ଦେହରେ ପାଉଁଶ ବୋଳି ହୋଇ ଚିଲମରେ ଗଞ୍ଜେଇ ଭରି, ବଂ ବଂ ଭୋଳା କହି, ନିଶି ପୁହାଇ ଥିଲେ କି ନାହିଁ ଜଣାନାହିଁ ମାତ୍ର—

କିମ୍ବଦନ୍ତୀ କହେ — ବାବା ଗୋରେଖ ନାଥ ଏହିଠାରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ସେଥିପାଇଁ ଅଗିରା ପୁନେଇଁ ଦିନ ଶହ ଶହ ଗୋରେଖ ଭକ୍ତ ଏଠାରେ ରୁଣ୍ଡ ହୁଅନ୍ତି । ରାତି ସାରା ମେଳା, ମଉଚ୍ଛବ ଚଳେ । ନାଟ ତାମସା ହୁଏ । ଖୋଳ କରତାଳ ସାଙ୍ଗକୁ ଖଞ୍ଜଣୀ ମାଦଳରେ ଖଣ୍ଡ ମଣ୍ଡଳ କମ୍ପି ଉଠେ । ଗଞ୍ଜେଇ ଗନ୍ଧ ଯୋଜନ ଯୋଜନ ଦୂରକୁ ପବନ ଉଡ଼ାଇ ନିଏ । ସେହିଦିନ ଯିଏ ଯାହା ମନାସେ ସେ ତାହା ପାଏ । ଅପୁତ୍ରିକ ପୁତ୍ର ଲାଳସାରେ ଯାଏ । ଅନ୍ଧ ଚକ୍ଷୁ ଲାଭ କରିବା ପାଇଁ ଦୌଡ଼େ । ବଧୀର ଶ୍ରବଣ ପାଇଁ ପ୍ରାର୍ଥୀ ହୁଏ । ଅନୂଢ଼ା ଅନୁପମ ବର ଲାଭ କରିବା ମାନସରେ ଧାଏଁ ।

ଗୋରୁ, ମଣିଷ କାହାକୁ ଦନ୍ତଘାତ ହେଲା ମାତ୍ରେ ତାକୁ ଆଣି ପାଲଣା ପାରି ଗୋରେଖା ମଠରେ ଶୁଆଇ ଦିଆଯାଏ ।

ଆଜି ନୁହେଁ, ହଜାରେ ବର୍ଷ ହେଲା ଗୋରେଖା ମଠରେ ଗୋରେଖ ମହିମା କୀର୍ତ୍ତନ କରା ହୋଇ ଆସୁଛି । ତେବେ ଏଠାରେ ଶାଢ଼ୀ ପିନ୍ଧା ଜୀବଙ୍କ ସଂଖ୍ୟା ବେଶି । ଜରୁବନ ସୁନ୍ଦରୀଙ୍କ ଠାରୁ ଗଗନ ସୁନ୍ଦରୀଙ୍କ ପର୍ଯ୍ୟନ୍ତ ଏଠାକୁ ସମସ୍ତେ ଆସନ୍ତି । ଓଠରେ ନାଲି, ପାଦରେ ନାଲି, ଦଶ ହଜାରୀ ଚୁଲିଲେ ଚୋଟା ମାଳ ପୂରିଯାଏ ।

ବଇଦେହୀ ସେମିତି ସେଦିନ ତା' ଏକୋଇର ବଳା ବଣିକେଶନ ବଣିଆଙ୍କୁ ସାଙ୍ଗରେ ଧରି ଆସିଥିଲା ଗୋରେଖା ମଠକୁ । ବାବା ଗୋରେଖ ନାଥଙ୍କ ପାଖରେ ତାର ଗୋଟିଏ ମାତ୍ର ମିନତି, ଗୋଟିଏ ମାତ୍ର ପ୍ରାର୍ଥନା ବଇଆ ବାପା ବଇଣିଆ କେମିତି କାଳ ମାଟିରୁ ଫେରି ଆସୁ । କାହାର ପୁଅ, କାହାର ନାତି ହୋଇ ସେ ଯାଇଁ ଗୋଟାଏ ଡେମିଣୀ ରଖି ସିଆଡ଼େ ଲହିଛି, କେମିତି କଥା ଏ ? ନାଳ ମାଟିର ପୁଣି ଏମିତି ଗୁଣ ସତେ ।

ସବୁ ନିୟମ, ସବୁ ଗୁଣ ମନରୁ ପାଶୋରି ଯାଏ । କିଛି କାହ୍ନି କରେ ନା ?

ବାବା ଗୋରେଖ ନାଥ ସେ କେମିତି ଫେରି ଆସନ୍ତୁ । ତାଙ୍କର ସଦ୍‌ବୁଦ୍ଧି ହେଉ । କାଳନାଗୁଣୀ ଡେମିଣୀର ବାହୁ ବନ୍ଧନ ଶିଥିଳ ହୋଇଯାଉ ।

ଆଖିବୁଜି, ଆଣ୍ଠୁ ମାଡ଼ି ବସି ପ୍ରାର୍ଥନା କଲା ବଇଦେହୀ ।

ବଂଶନାଶନ ବାବୁ ବି ଜଣେ ଗୋରେଖ ନାଥଙ୍କ ପରମ ଭକ୍ତ । ସେ ବି ଆସିଥିଲେ ସେଦିନ ଗୋରେଖା ମଠକୁ । ତେଲ, ଲୁଣ ସଂସାରରୁ ଡାଳ ସମ୍ଭାଳି ନ ପାରି, ଘଇ ଭଉଣୀଙ୍କ ଫର୍ମାସ ତାମିଲ କରି ନପାରି ମା'ଙ୍କଠାରୁ ଫକିର ମୋହନଙ୍କ ପେଟେଣ୍ଟ ମେଡ଼ିସିନ୍‌ରୁ ଦି'ପାନ ଖାଇ, ଗୋରେଖ ନାଥଙ୍କୁ ଭକ୍ତି ନିବେଦନ କରିବାକୁ ଆସିଥିଲେ ସେ ।

ସେ ଗୋଟିଏ ଅଧା ଗୁଇ ଅଧା ଆଲୁଅ ମିଶ୍ରିତ ସ୍ଥାନରେ ବସି ମନେ ମନେ ଗୋରେଖ ନାଥଙ୍କୁ ପ୍ରାର୍ଥନା କରୁଥିଲେ—"ପ୍ରଭୁ, କଳି କାଳ ପ୍ରବଳ ହେଲା । କାମିନୀମାନଙ୍କର ଦର୍ପ ଗଞ୍ଜନ ନ ହେଲେ, ପୁରୁଷମାନଙ୍କର ଆଉ ନିସ୍ତାର ନାହିଁ ।

ପୁରୁଷମାନେ ଘୋଷେଇ କଲେଣି, କାମିନୀମାନଙ୍କର ପାଳଟା ବସ୍ତ୍ର ଶୁଖାଇଲେଣି, ଜୟଦେବଙ୍କ "ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ ସାଜିଲେଣି, ଆଉ ଖାଲି ଜନ୍ମ କରିବା ପାଇଁ କ୍ଷମତାଟା ଦେଇ ଦେଲେ ସବୁ ସରିଯାନ୍ତା । ପ୍ରଭୁ ।"

ଏତିକି ବେଳେ ଜଣେ ବକ୍ତା ଅଦୂରରେ ଭାଷଣ ଦେଇ କହୁଥିବାର ଶୁଣା ଯାଉଥିଲା --

"ଗୋରେଖ ନାଥଙ୍କ ଗୁରୁ ମତ୍ସ୍ୟ ନାଥ ବଡ଼ ପ୍ରୀତି ପାଉଥିଲେ । ସେ ପ୍ରବୁଦ୍ଧ ସନ୍ନ୍ୟାସୀ ହୋଇ ମଧ୍ୟ ଗୃହସ୍ଥାଧର୍ମ ପ୍ରତି ତାଙ୍କର ସମ୍ମାନ ଥିଲା । ଅନ୍ୟାୟ ଅନୀତିର ସେ ଦୃଢ଼ ପ୍ରତିରୋଧ କରୁଥିଲେ ।

ଆଉ ଜଣେ ବକ୍ତା କହୁଥିଲେ—ଦେହରେ ପାଉଁଶ ବୋଳି ହେଲେ ମଶା, ଡାଆଁସ ଦାଉରୁ ରକ୍ଷା ମିଳେ । ଗଞ୍ଜେଇ ଖାଇଲେ ରାତ୍ରୀ ଉଜାଗର ରହି ସାଧନା କରିବାର ସୁବିଧା ହୁଏ ।

ଆଉ ଜଣେ ବକ୍ତା କହିଲେ—"ଆଜି ଆମେ ଯେଉଁ ସିଂନାଥ ମେଳା ଦେଖୁଛୁ ତାହା ଏହି ଧର୍ମର ପ୍ରଚାରକ ଆଦି ନାଥ, ମୀନ ନାଥ, ଗୋରେଖ ନାଥଙ୍କ ଠାରୁ ସୃଷ୍ଟି । ଏହି ତିନି ନାଥଙ୍କୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କରି ଆମେ ସିଂନାଥ କରି ଦେଇଛୁ ।"

ବଂଶନାଶନଙ୍କ ମନକୁ ବକ୍ତୃତାଗୁଡ଼ିକ ବେଶ୍ ଘେନଲା । ସେ ଉତ୍ସାହିତ ହୋଇ କିଛି କହିବାକୁ ଅଣ୍ଟା ଭିଡ଼ିବାକୁ ଆରମ୍ଭ କରିବା ମାତ୍ରେ ତାଙ୍କ ପେଟଟା କାହିଁକି ଖିଞ୍ଚଣି କାମୁଡ଼ିଲା ।

ସେ ପେଟଟାକୁ ଚିପିଧରି, ଲୋକ ଗହଳରୁ ଟିକିଏ ଦୂରକୁ ଯାଇ ଗୋରେଖ ମଠ ହତା ଭିତରେ ଘନ ଘୋର ଅନ୍ଧକାର ମଧ୍ୟରେ ଗୋଟିଏ ଆମ୍ବ ଗଛ ଗିଅକୁ ମୁଣ୍ଡ ଦେଇ ଶୋଇଲେ ।

ବଡ଼ କଷ୍ଟ ହେଉଥାଏ ତାଙ୍କୁ ।

ଆଖି ବନ୍ଦ କରି ଶୋଇବାକୁ ଯେତେ ଚେଷ୍ଟା କଲେ ବି ସେ ଶୋଇ ପାରୁ ନ ଥାନ୍ତି । ସେ କରି ଲେଉଟାଇ ଛଟପଟ ହେଉଥାନ୍ତି ।

ଏତିକି ବେଳେ ଜଣେ ବୃଦ୍ଧ ଆସି ତାଙ୍କ ଉପରେ ପୁରୀଷ ତ୍ୟାଗ କରିବାକୁ ଚେଷ୍ଟା କଲା ।

ବଂଶ ନାଥ ବାବୁ କହିଲେ—"ହାଁ"......ହାଁ......

ବୃଦ୍ଧ ଜଣକ ଟିକିଏ ଅପମାନିତ ବୋଧ କରି ଚାଲିଗଲେ ।

ତାପରେ ଆସିଲେ ଦୁଇ ଜଣ ସମବୟସୀ—ଖେଳା ଗଞ୍ଜେଇଖିଆ ଦୁଶା । ବଂଶ ନାଶନ ବାବୁଙ୍କୁ ଆମ୍ବ ଗିଅ ଭାବି, ତାଙ୍କ ଉପରେ ପାଳଟା ହେବାରଣ ରଖି ଶୌଚାଦି କ୍ରିୟା ସମାପନ କରିବାକୁ ବୋଧହୁଏ ଗଲେ ।

କିଛି କ୍ଷଣ ପରେ—

ଫେରଆସି ମେଂକ ଆଉ ନାକା ଦୁଇଜଣ ଯାକ କଥାବାର୍ତ୍ତା ହେଲେ । ମେଂକ କହିଲା—"ହେଇଲେ ବଉଳ, ତୋ ଭାଗ୍ୟ ଭାରି ଭଲ । ସେଇ ଯିଏ ତ୍ରିଭଙ୍ଗୀ ଠାଣିରେ ଠିଆହୋଇ ମନ୍ଦ ମନ୍ଦ ହସି ବକ୍ତୃତା ଦେଉଥିଲେ ତୁ ଯଦି ତାଙ୍କୁ ଜୀବନ ସାଥୀ ରୂପେ ପାଇ ଯିବେ ତୋ ଜୀବନ ଧନ୍ୟ-ହେବ । ନାକା ହୁଁ ମାରି କହିଲା—"ମଲ୍ଲ ତୁମ ବର ତ କନ୍ଦର୍ପ କରି ରୂପବାନ ।"

ମେଂକ ଅଳ୍ପ ହସି ହସି ଏଥର କହିଲା—"ମୁଁ ଶୁଣିଚୁ ସେଯା କଥାରେ ଅଛୁ—"ଯାହା ନ ଦେଖିବ ବେନି ନୟନେ, ପରତେ ନ ଯିବ ଶୁ ଛୁ ବଚନେ ।"

ନଜେ ଠିକେ ତାଙ୍କୁ ନୟନ ପୁରାଇ ନ ଦେଖି· ଲ ମନରେ ଶାନ୍ତି ଆସୁନ । ତାଙ୍କୁ ଦେଖିବା ପାଇଁ ଖାଲି ଆଜ ସମସ୍ତଙ୍କ କଥା ନ ମାନି ଏଠାକୁ ଆସିଛୁ । ସେ କଣ ଆଉ ସତେ ଆସିନାହାଁନ୍ତି ?

ନାକା କହିଲା—"ହଁ ମ, ଅଳ୍ପ ସମୟ ପୂର୍ବରୁ ମୁଁ ତାଙ୍କୁ ଦେଖିଛୁ ପରା, ସେ ଗ୍ରେଟରଙ୍କପରି ଏଣେ ତେଣେ ଅନାଉଥିଲେ । ମୁହଁରେ ବୋଟେ ଦାଢ଼ୀ ରଖିଛନ୍ତି । ତୁମକୁ ଖୋଜୁଥିଲେ କି କଣ ?

ମେଂକ କହିଲା—"କଉଳ, ତୁମେ ଭାରି ଦୁଷ୍ଟ । ମୋତେ କାହିଁକି ଖୋଜୁଥିବେ, ତୁମକୁ କାହିଁକି ଖୋଜୁ ନଥିବେ ? ପୁରୁଷ ତ ଭ୍ରମର । ଯେଉଁଠି ମଧୁ ପାଇବେ ସେଇଠି ରହିଯିବେ ।"

ଦୁଇ ଦୁଇଟା ଯୌବନଭରା ବଂଶନାଶନ ବାବୁ ଆଉ ସହନ୍ତେ କେତେକେ ? ବାସୁକୀପରି କରି ନେଉଠାଇଲେ ।

ଦୁଇ କଉଳ ଯାକ ଖଣ୍ଡେ ବାଟ ଦଉଡ଼ ପଳାଇ ଗୁଡ଼ିକ ଛେପ ଥୁ' ଥୁ' କରି ପକାଇ ଠିଆ ହୋଇଯାଇ ବାଲୁଆପରି ପଛକୁ ଫେରି ଅନାଇଲେ ।

ଜଣେ କହିଲା—"ଅଜଗରଟା ।"

ଆଉ ଜଣେ କହିଲା - "ମଇଁଷଟା ।"

ପେଟକୁ ଧରି, ବଂଶନାଶନବାବୁ ଉଠି କବିସୂର୍ଯ୍ୟଙ୍କ ଚମ୍ପୂରୁ ପଦେ ଗାଉଥିଲେ—"ଖଟାଅ ମୋତେ ତା ବେହରଣ ଫୁଲ ଖଟଛଳେ ଦବାନଶା ସଙ୍ଗୀତରେ ···ଖେଳା ଖଂଜଘଟ ଦୃଶା ।"

ଦୁଇ ବଉଳ ଯାକ ଏଥର ଅନାଇଲେ । ବଂଶନାଶନବାବୁ ସେହି ଅନ୍ଧାରରେ ଠିଆ ହୋଇଛନ୍ତି । ଦୂରକୁ ଖଣ୍ଡିଆ ପାହାଡ଼ ଭଳି ଦିଶୁଛନ୍ତି ।

ଭୟରେ ସେ ସ୍ଥାନ ଛାଡ଼ି ଦୁଇ ବଉଳ ଯାକ ପଳାଇଲେ । ବଂଶ ନାଶନବାବୁ ଡାକୁଥିଲେ—"ନଅ, ନଅ ତୁମ ସାପ୍ପା ଗୁଡ଼ିଗଲ, ନଅ ।"

ବଂଶନାଶନବାବୁ ଆଜ ସେଠାରେ ନ ଶୋଇ ଗୋରେଖ ମଠ ପୋଖରୀ ହୁଡ଼ାରେ ଏଥର ଯାଇଁ ଶୋଇ, ପେଟକୁ ଚପି ବିକଳରେ କହିଲେ—"ବାପାଲେ, ବୋଉଲେ ।"

ବଇଦେହୀ ସେବାଠେ ଗୋଟିଏ ବ୍ରେଗଡାଲି ଧରି ଆଉ ଗୋଟିଏ ହାତରେ ବଶିଆ ହାତକୁ ଧରି, ମଠରୁ ଫେରୁଥିଲି ଘରକୁ । ମନେ ମନେ କହୁଥିଲି—"ପ୍ରଭୁ, ଗୋରେଖ ନାଥ, ଯଦି ସତେ ତୁମେ ପ୍ରତ୍ୟକ୍ଷ ଦେବତା ହୋଇଥିବ, ତେବେ ମୋ' ଦୁଃଖ ଶୁଣିବ । ମୁଁ ଘରେ ପହଞ୍ଚିଲା ବେଳକୁ ବଇଆ ବାପା ଫେରି ପିଣ୍ଡାରେ ବସିଥିବ ।"

ଏତିକ ବେଳେ ପୁଣି ଶୁଭିଲା—"ବାପାଲେ, ବୋଉଲେ ।"

ବଇଦେହୀ ଝୁଣ୍ଟି ପଡିଲା । ବଇଦେହୀକ ସମସ୍ତେ ଡାକନ୍ତି 'ବଇ' । ବଂଶନାଶନ ବାବୁଙ୍କ ଅସ୍ପଷ୍ଟ 'ବୋଉଲେ' ତାକୁ "ବଇଲେ" ବୋଲି ଶୁଭିଲା । ଛାତିରେ ତା'ର ପଶିଲା ଛନକା । ଭୟୋରୁ ତା'ର ସ୍ଫୁରି ଉଠିଲା, ଛାତି ତା'ର କ'ଣ ହୋଇଗଲା । ଭକ୍ତିରେ ଲଙ୍ଘି ପଡ଼ିଲା ସେ । ସତେ କ'ଣ ଗୋରେଖ ନାଥ ତା' ଦୁଃଖ ଶୁଣିଲେ ?

ସେ ଚୁପୁ ଚୁପୁ କରି ପୁଅକୁ ପଚାରିଲା—"ଆରେ ବଶିଆ, ମୋ' ନାଆଁ ଧରି କଏ ଡାକିଲା ?"

ବଶିଆ କହିଲା—"ବୋଉଲେ ବାପା ହେବେ ପରା ।"

ବଇ କହିଲା—"ଇଲେ ମାଆଗୁଣୀ, ପୁଅଟା ତୁ' ଏମିତି କ'ଣ କହୁଛୁ ? ସେ ଫେରେ ମୋ' ନାଆଁ ଧରି ଡାକିବେ ? ଏକ ଅଲାଜୁକ କଥା ? କେଜାଣି ଅବା, ଲେମିଣୀପଡ଼ାରେ ରହି, ସବୁ ଭୁଲି ଯାଇଥିବେ ।"

ବଂଶନାଶନବାବୁ ପୁଣି କହିଲେ—"ବୋଉଲେ—"

ବଇଦେହୀ ଏଥର ଗୋଡ ଚପି ଚପି ବଂଶନାଶନ ବାବୁଙ୍କ ଆଡ଼କୁ ମୁହାଁଇଲା ।

ବଂଶନାଶନ ବାବୁଙ୍କ ପାଖରେ ଯାଇ ଘଡ଼ିଏ ଖଣ୍ଡେ ସେହି ଅନ୍ଧାର ଭିତରେ ଠିଆ ହୋଇ, ତା' ପରେ ତାଙ୍କ ଉପରେ କଚାଡ଼ି ହୋଇ ପଡ଼ି କହିଲା—"ତୁମ ମନରେ ସତେ ଏତେକଥା ଥିଲା ?"

ବଂଶନାଶନବାବୁ କ'ଣ କହିବେ କହିବେ ହେଉଥାନ୍ତି, ମାତ୍ର କହିପାରୁ ନଥାନ୍ତି ।"

ବଇଦେହୀ ବହେ ଆଉଁଷିଲା ବଂଶନାଶନ ବାବୁଙ୍କୁ ।

ତା'ପରେ...

ତା'ପରେ......

ବଂଶନାଶନ ବାବୁଙ୍କୁ ଧରି ଘରକୁ ନେଲା ବଇଦେହୀ ।

ଦଶ ବର୍ଷପରେ ଦେଖା ।

କେତେ ଲୋକ କେତେ କଥା କହୁଛନ୍ତି । ଗୁଡ଼ିକ ପଥର କରି ସବୁ ସହୁଛି ବଇଦେହୀ । ହଳଲଧନ ହାତରେ ପାଇଛି ସେ ଏବେ ।

ବଂଶନାଶନବାବୁଙ୍କୁ ନେଇ ଖଟ ଉପରେ ଶୁଆଇ, ମାଠ ଘୋଡ଼ାଇ ଦେଲା । ଗରମ ପାଣି, ଶୁଣ୍ଠି ଆଣି ସାଙ୍ଗେ ସାଙ୍ଗେ ଦେଲା, ପେଟ କାମୁଡ଼ା ରହିଗଲା । ନିଦ ଲାଗିଗଲା ତାଙ୍କୁ ।

ବଇଦେହୀ କି ଶୁଆଇ ଦିଏ ? କୁତୁ କୁତୁ କରି ଉଠାଇଲା ତାଙ୍କୁ । ବଂଶନାଶନ ବାବୁ ଆଖି ଖୋଲି ପୁଣି ଆଖି ବୁଜିଲେ ।

ବଇଦେହୀ ଏଥର କହିଲା—"କେମିତି ଅରସିକ ମଣିଷଟା ମ ତୁମେ ? ଏତେ ଦିନକରେ ଘରକୁ ଆସିଲ, ତୁମ ଆଖିକୁ ନିଦ ଆସୁଛି କେମିତି ?"

ବଂଶନାଶନବାବୁ ମଠ ମଠ କରି କିଛି କହିପାରୁ ନଥାନ୍ତି ବଇ ଦେହୀକି । ଗୋରେଖନାଥ—ମତ୍ସ୍ୟନାଥ, ଅନ୍ୟାୟ ଅମିତର ଦୃଢ଼ ପ୍ରତିରୋଧ କରୁଥିଲେ ।

ବଇଦେହୀ ବଂଶନାଶନ ବାବୁଙ୍କ ଦାଢ଼ୀକି ସାଉଁଳାଉ ସାଉଁଳାଉ କହିଲା—"ଏ ପୁଣି କି ରଙ୍ଗ ? କ'ଣ ଋଷ୍ୟ ଶୃଙ୍ଗ ମୁନି ସାଜିଲକି ? ଏବେ ଜଇତା ହାବୁଡ଼ରେ ପଡ଼ିଛ ଯିବ କୁଆଡ଼େ ?"

ଏତିକବେଳେ—

କବାଟରେ କିଏ ହାତ ବାଡ଼େଇଲା । ବଇଦେହୀ ଚମକି ପଡ଼ି ପଚାରିଲା କିଏ ?

—"ମୁଁ ।"

ବଇଦେହୀ ପୁଣି ଜୋର ଦେଇ ପଚାରିଲା—

"ତୁମେ କିଏ କହୁନା ?"

"ତୁମେ କବାଟ ଖୋଲିଲେ ଜାଣି ପାରିବ ମୁଁ କିଏ ?"

ବଇଦେହୀ ବଂଶନାଶନ ବାବୁଙ୍କୁ କହିଲା—

"ମୋ ଧଣ ଚେଇଁଥିବ । ଶୋଇବ ନାହିଁ, ମୁଁ ଦେଖେ ସେ କିଏ ?"

କବାଟ ଖୋଲି ଦେଖେ ତ ସେ ଆଉ କେହି ନୁହଁନ୍ତି ବଇଆ ବାପା ବଇଶିମା ।

ବଇଦେହୀ କହିଲା—"ପ୍ରଭୁ ଗୋରେଖ ନାଥ, ପୁଣି ତୁମର ଏ କି ମାୟା ? ବଂଶନାଶନ ବାବୁ କିନ୍ତୁ ମନେ ମନେ ପ୍ରମାଦ ଗଣିଲେ । ସେ କାନ୍ଥ ଡେଇଁ ପଡଶା ସାହିର ଜଣକ ଘରକୁ ପଶିଗଲେ ।

ସେ ଘରେ ଶୋଇଥିବା ଲୋକେ—"ଚୋର ଚୋର ବୋଲି ପାଟି କମ୍ପାଇଲେ ।" ସାହିସାରା ସମସ୍ତେ ଲୋକ ଉଠିଲେ ।

ବଂଶନାଶନ ବାବୁଙ୍କୁ ଖୁଣ୍ଟରେ ବାନ୍ଧି ବଢେ ପିଟିଲେ ।

ରାତି ପାହିଲା ।

ସକାଳ ହେଲା । ବଇଁଶିମାକୁ ଦେଖି ବଇଆ ପଚାରିଲା—"ବୋଉଲୋ ସେ କିଏ ? ବଇଦେହୀ କହିଲା—"ବାପା ପରା ।" ବଇଆ ପୁଣି କହିଲା—"ଏ ବାପା ତ ସେ ବାପା ନୁହନ୍ତି ?", ବଇଦେହୀ ନାଲି ଆଖି କାଢି କହିଲା—"ଚୁପ୍ ଚୁପ୍ ।" ବଂଶନାଶନ ବାବୁଙ୍କ ମୁହଁରେ ଚୂନକାଳି ବୋଳି ଯେତେବେଳେ ଦାଣ୍ଡରେ ବାଜା ବଜାଇ, ପାତି ମାଙ୍କଡ ନର୍ତ୍ତନ ଭଙ୍ଗିରେ ନଚାଇ ନଚାଇ ନେଲେ—

ସେତେବେଳେ ମେଂକ କହିଲା—

"ବୋଉଲୋ ଏ ତ ସେଇ ହେବେ ପରା ?"

ମେଂକ ବୋଉ କହିଲେ—"ଇଲୋ ମେଂକ ତୁ' କ'ଣ କହୁଛୁ ? ଇଏ ଗଂଧିଆ, ଇଏ ହଗୁରା ତାକୁ ଛୁଡ଼ଦିଅ । ଛୁଡ଼ ଦିଅ ସେ ପରା ଆମ ଜ୍ୱାଇଁ ହେବେ ?"

ବଂଶନାଶନ ବାବୁ ଏକଥା ଶୁଣି ହସି ପାରୁ ନ ଥିଲେ, କି କାନ୍ଦି ପାରୁ ନ ଥିଲେ ।

●

❋

# ହାଉଡରେ କ'ଥନ୍ତୁ କାହିଁ ହେନ୍ତୁ କାହିଁ ?

ଚନ୍ଦରା ମା' ଚନ୍ଦଶ୍ରୀଙ୍କ ସମସ୍ତଙ୍କର ଡର । ସେ ନବାବ ହେଲେ ବି ଜବାବ ଦିଏ । କାହାକୁ ଡରେ ନା । ସେ ଦାଣ୍ଡରେ ଚାଲି ଗଲାବେଳେ ଟ ଗ ମୋଳ ପେଣ୍ଡ ଫିଟାଇ, ଖପରା ଢେଉଁ ଢେଉଁ ଯାଉଥାଏ ।

ଘଡ଼ିକେ ଘୋଡ଼ା ଛୁଟାଇ ଦିଏ ସେ । ଝିମିଟି ଖେଳରୁ ମହାଭାରତ ସୃଷ୍ଟି କରିଦିଏ ।

ସେଇ ଚନ୍ଦରା ମା ଚନ୍ଦଶ୍ରୀର ଗୋଟିଏ ଝିଅ । ନାଆଁ ତାର ଗଣ୍ଡେଇ । ଦେଖିବାକୁ ଭାରି ସୁନ୍ଦର । ଗୋଟିଏ ଗୁଣ୍ଡଳରେ ଗଢ଼ା । ହେଲେ ଭାରି ମୁଖରା । ବଚନ ତାର କରତ ଭଳି ଦାନ୍ତୁଆ ।

ତାକୁ ଯିଏ ଦେଖେ, ସେ ଲୋଭାଏ, ମାତ୍ର କଳହୁଣ୍ଡୀ ଯୋଗୁଁ ତାକୁ ଘରକୁ ନେବାକୁ କେହି ସାହସ କରନ୍ତି ନାହିଁ ।

ପୁଣି—

ସେ ଭାରି ବୁଦ୍ଧିମନ୍ତ । ଯେ ତା' ପାଖକୁ ଯାଏ, ସେ ତାକୁ ଯୁକ୍ତିରେ ପରାସ୍ତ କରିଦିଏ ।

କେତେ ବଙ୍କଲିଆ ଟୋକା ଗଣ୍ଡେଇକୁ ବାହା ହେବାକୁ ପାଟିରୁ ଲାଳ ଗଡ଼ାଇଲେ । କାହାରି ଆଶା ପୂରଣ ହୋଇ ପାରିଲା ନାହିଁ ।

ଶେଷରେ ସବୁ ଟୋକା ଯାକ ଏକାଠି ହୋଇ ଠିକ୍ କଲେ ଗଣ୍ଡେଇକୁ କେମିତି ଜବତ କରିବାକୁ ହେବ । ସେମାନେ ଏଭଳି ଏକ ଲୋକ ଖୋଜିଲେ ଯିଏ ପ୍ରଚଣ୍ଡ ମୂର୍ଖ ହୋଇଥିବ, ଅକ୍ଷି ମୁଠି ନେବାକୁ ବାଡ଼ି ଗୋବରେ ଯୋତେ ଜମି ନ ଥିବ । ଦେଖିବାକୁ କିନ୍ତୁ ଖୁବ୍ ସୁନ୍ଦର ହୋଇଥିବ । ସତକୁ ସତ ଏଭଳି ଏକ ଲୋକ ମିଳିଲା ।

ନାଆଁ ତାର ଗାଣ୍ଡୁଆ ।

ଦେଖିବାକୁ ଭାରି ସୁନ୍ଦର । ରାଜପୁତ୍ର ଭଳି । ସବୁବେଳେ ହସ ହସ ମୁହଁ । ଏକ ନମ୍ବର ପବନା । ପବନକୁ ଧରି ହେବପଛେ ତାକୁ କିନ୍ତୁ ଧରି ହେବ ନାହିଁ ।

ଯେତେ ବଡ ପଣ୍ଡିତ ହେଉ ପଛେ ସେ କଥାରେ ବାନ୍ଧି ପକାଇବ । ଭାରି ଅଖାଡୁଆ । ଯାହା ବୁଝିଥିବ ସେଯା ।

ବାଡ଼ ଗୋବରରେ ଗୋବେ ଜମି ନାହିଁ ।

ସେ କିନ୍ତୁ ସମସ୍ତିଙ୍କି କହେ ତାର ବାରବାଟି ଗୃଷ ।

ସବୁ ଟୋକାଯାକ ପହଞ୍ଚିଲେ ଗାଣ୍ଡୁଆ ପାଖରେ । ତାକୁ ବହୁତ ବୁଝାଇଲେ । ନାନାରକମ ଲୋଭ ଦେଖାଇଲେ । ଗଣ୍ଡେଇ କଥା କହି ତା' ମନରେ ଆନନ୍ଦ ସଞ୍ଚାର କଲେ ।

ଗଣ୍ଡେଇ କଥା ଭାବି ଭାବି କୁଣ୍ଢେ ମୋଟ ହୁଅି ଫୁଲିଗଲା ଗାଣ୍ଡୁଆର ।

କେତେ କଳ୍ପନାର ମାୟାଜାଲ ମନେ ମନେ ବୁଣିଲା ସେ । ଗଣ୍ଡେଇ ଆସିଲେ ସେ ତାକୁ ସ୍ୱର୍ଗର ଅପ୍‌ସରା ପରି ସଜାଇବ । ତାକୁ ନାଚ ଶିଖାଇବ । ତାକୁ ଚନ୍ଦ୍ରତାରକା ଭଙ୍ଗୀରେ ଗୀତ ଶିଖାଇବ ।

ଗଣ୍ଡେଇ ଗର୍ଭରୁ ଯେଉଁ ପୁଅଟିଏ ହେବ ତା' ନାଆଁ ସେ ରଖିବ ଗୋପାଳିଆ ।

ବେଳେ ବେଳେ ଏପରି ହୁଏ ଗାଣ୍ଡୁଆ ବହ୍ୱଳ ହୋଇ ଗଣ୍ଡେଇ କଥା ଭାବୁ ଭାବୁ ନଦ ବାଉଳାରେ ତଳକୁ ଖସି ପଡ଼େ ।

ଆଉ ବେଳେ ବେଳେ ଏପରି ହୁଏ ଯେ ସେ ଅନ୍ୟ ମନସ୍କ ଭାବରେ ଉଠି ଚଢ଼ିଲା ବେଳେ ମୁଣ୍ଡରେ ସିକାବାଡ଼ି ଦଣ୍ଡ ବେହେଶ ଭାଙ୍ଗି ଯାଏ ।

ତେବେ—

ଗାଣ୍ଡୁଆର ଗୋଟିଏ କଥାକୁ ଭୟ । ଗଣ୍ଡେଇ ସିନା ସୁନ୍ଦରୀ, ମାତ୍ର ଭାରି କଳହୁଡ଼ୀ । ତାକୁ ନେଇ ଘର ସଂସାର ଚଳାଇବ କେମିତି ?

ପୁଣି ଭାବେ—

ଆଗେ ବଙ୍କା ଘରଟା ସରୁ । ଗଣ୍ଡେଇ ଆଗେ ଆସୁ । ତା'ପରେ କଣ କରାଯିବ ଦେଖାଯିବ ।

ଦିନ ଠିକ୍ ହେଲା ।

ଗାଣ୍ଡୁଆ ସହିତ ଗେଣ୍ଡୁରିର ବିବାହ ସମ୍ପନ୍ନ ହୋଇଗଲା । ବର କନ୍ୟା ସବାରି ପାଲିଙ୍କିରେ ଆସିଲେ । ଗାଣ୍ଡୁଆର ଘର ଯେମିତି ପାଖ ହୋଇଗଲା, ସେ ପାଲିଙ୍କିରୁ ଓହ୍ଲାଇ ପଡ଼ି ଦଉଡ଼ି ଗଲା । ମରେଇ ପାଖରେ ଥୁଆ ହୋଇଥିବା କଟୁରିଟିକୁ ଆଣି ଦାଣ୍ଡ ଦରଜା ନିକଟ କଦଳି ବଗିଚାରୁ ଦୁଇ ଚାରିଟା ଗଛ କାଟି ଶୁଆଇ ଦେଲା ।

ଗେଣ୍ଡୁରି ଏତିକିରୁ ଡରିଗଲା ।

ସେ ମନେ ମନେ ଭାବିଲା, ଏ ଲୋକଟା ଏଡ଼େ ଅଖାଡ଼ୁ ? ଏତ ରାଗରେ କଦଳି ଗଛ ହାଣି ପକାଉଛି । ମଣିଷକୁ ଆଉ ରଖିବ କ'ଣ ?

ସେ ଜୀବନ ସାରା ଗାଣ୍ଡୁଆ ପାଖରେ କେମିତି ଚଳିବ ବୋଲି ତାର ଚିନ୍ତା ହୋଇଗଲା । ଯେତେଦିନ ସେ ଶାଶୁ ଘରେ ରହିଲା ସବୁବେଳେ ବାପଘର କଥା ଭାବି ଝୁରି ହେଲା ।

ଅଷ୍ଟମଙ୍ଗଳା ବାସୀ ତା' ବାପ ଘରୁ ଲୋକ ଆସି ତାକୁ ନେଇ ଗଲେ ।

ଅଳ୍ପଦିନ ପରେ ପଡ଼ିଲା ଗହ୍ମ ପୁନେଇ ।

ହାଣ୍ଡିଆ ଘର ତ ।

ଗାଣ୍ଡୁଆକୁ ପୁହେଇ ଖୁଆଇବାକୁ ନେଲେ ।

ଗାଣ୍ଡୁଆ ଚୂପ ହୋଇ ଦାଣ୍ଡ ମେଲାରେ ବସିଥାଏ । ସାଇପଡ଼ିଶାରୁ କେତେ ଲୋକ ଆସି ଜ୍ୱାଇଁ ଦେଖୁଥାନ୍ତି । ଯେମିତି ଦେଖଣାହାରୀ ଦେଖନ୍ତି ସର୍କସର ବାଘକୁ ।

ସଞ୍ଜବତି ଲାଗିଲା ।

ଗେଣ୍ଡୁରିର ଖୁଡ଼ୀ ମୁଣ୍ଡରେ ହାତେ ଓଢ଼ଣା ଟାଣି ସଞ୍ଜବତି ନେଇ ଚଉଁରା ପାଖକୁ ଗଲେ । ସେ ଅବିକଳ ଗେଣ୍ଡୁରି ଭଳି ଦେଖିବାକୁ ।

ଗାଣ୍ଡୁଆ ପିଣ୍ଡା କ'ଣରେ ବସିଥାଏ । ଯେତେବେଳେ ଖୁଡ଼ୀ ସଞ୍ଜ ଦେଇ ଫେରିଲେ ଗାଣ୍ଡୁଆ ଦଉଡ଼ିଯାଇଁ ଖୁଡ଼ୀ ମୁଣ୍ଡରୁ ଓଢ଼ଣାଟା ଟାଣି ଦେଇ କହିଲା—"ପ୍ରିୟେ, ଗୁରୁ ଶୀଳେ କୁହ କଥା ।"

ଖୁଡ଼ୀ ବ ନୂଆ ବାହା ହୋଇ ଆସିଥାନ୍ତି ।

ସେ ଭାବିଲେ ତାଙ୍କ ସ୍ୱାମୀଙ୍କର ଏ କାଣ୍ଡ ।

ସେ ମୁହଁ ଘୁଞ୍ଚି କହିଲେ—"ଛୁ, ଜ୍ୱାଇଁ ଆସିଛନ୍ତି କେଉଁଠି ବସିଛନ୍ତି, ଦେଖିଲେ କ'ଣ ଭାବିବେ ? କହିବେ—"ଦାଦା ଖୁଡ଼ୀ ଏମିତି ପ୍ରେମିକ ପ୍ରେମିକା ? ଦାଣ୍ଡରେ ବି ପ୍ରେମରେ ମାତୁଛନ୍ତି।"

ଗାଣ୍ଡୁଆର ହାତ ଦୁଇଟି ଥର ଉଠିଲା। ଛାତି ଦମ ଦମ ପଡ଼ିଲା। ଦେହ ଉପରେ କମ୍ପିଲା। "ଖୁଡ଼ୀ ଯଦି ଏକଥା ଦାଦାଙ୍କୁ କହନ୍ତି, ସର୍ବନାଶ।"

ଭାଗବତ ଘରେ ଘଣ୍ଟା ବାଜିଲା।

ଗାଆଁର ବୁଢ଼ା ବୁଢ଼ୀଯାକ ଆସି ରୁଣ୍ଡ ହେଲେ। ସମସ୍ତେ ଶୁଣିଛନ୍ତି ଗଞ୍ଜେଇର ବର ଭାରି ପଣ୍ଡିତ। ତାଙ୍କୁ ଭାଗବତ ପଢ଼ାଇ ସମସ୍ତେ ଶୁଣିବେ।

ଗାଣ୍ଡୁଆ ହାତକୁ ବହି ଦିଆଗଲା। ବର୍ଣ୍ଣବୋଧର ଓଟ ପୃଷ୍ଠାଯାଏ ତ ଗାଣ୍ଡୁଆର ଦଉଡ଼। ସେ ଭାଗବତ ପଢ଼ିବ କେଉଁଠି ?

ଭାଗବତ ବହିର ପୃଷ୍ଠା ଓଲଟାଇ ଓଲଟାଇ ମନେ ମନେ ବାପା ମାଙ୍କୁ ଗାଳି ଦେଇ ନିଜକୁ ଧିକ୍କାର କରି କାନ୍ଦିଲା।

ବହିର ପୃଷ୍ଠା ଓଦା ହୋଇଗଲା।

ସମସ୍ତେ ଯେତେବେଳେ ବାଧ କଲେ—

ଗାଣ୍ଡୁଆ କଇଁ କଇଁ କାନ୍ଦି କହିଲା—

"ହାଇରେ କ' ଥିଲୁ କାହିଁ, ହେଲୁ କାହିଁ ?"

ଗଞ୍ଜେଇ ମା' କହିଲା, "ମୋ' ଜୋଇଁ ଆଜି ଏତେ କାନ୍ଦି ପାରିବ ନାହିଁ।"

ଶ୍ରୋତା ବର୍ଗ ଏକ ସ୍ୱରରେ କହିଲେ—"ସତେ ସତେ ଗଞ୍ଜେଇର ବର ବଡ଼ ପଣ୍ଡିତ। ବହି ଖୋଲୁ ଖୋଲୁ ଭାବ ପ୍ରବଣ ହୋଇ କାନ୍ଦି ପକାଉଛି।"

ଭାଗବତ ପଢ଼ା ଶେଷ ହେଲା।

ଦୁଇଦିନ ପରେ ପୁହୋଇଖିଆ ଶେଷକରି ଘରକୁ ଫେରି ଆସିଲା ଗାଣ୍ଡୁଆ।

ଦିନପରେ ଦିନ ଗଡ଼ିଗଲା।

ମାଘ ମାସରେ ଆସିଲା ଗଣ୍ଡେଇ । ସେ ପ୍ରଥମଥର ଗାଣ୍ଡୁଆ ସମ୍ବନ୍ଧରେ ବେଶି କିଛି ଜାଣିପାରି ନଥିଲା । ଏଥର ତାର ହୃଦବୋଧ ହେଲା ଯେ, ଗାଣ୍ଡୁଆ ଏକ ପ୍ରଚଣ୍ଡ ମୂର୍ଖ । ପାଟିରେ ତାର ପାଇରିଆ ରୋଗ । ଏତେ ଦୁର୍ଗନ୍ଧ ଯେ ପେଟରୁ ଭାତ ବାହାରି କରିଆଣେ ।

ପୁଣି —

ଶୋଇଲା ବେଳେ ଏତେ ଜୋରରେ ଘୁଙ୍ଗୁଡ଼ି ମାରେ ଯେ ଲୋକ ପୁଣି ଡରି ପଳାଇ ଯାଆନ୍ତି । ଏତେ ଖାଏ ଯେ ତା' କଥାରେ କହି ହେବ ନାହିଁ । ଅଧେଦିନ ଉପାସ ରହେ ଗଣ୍ଡେଇ ।

ସବୁବାର ଗୋଟାଏ ସୀମା ଅଛି ।

ସହି ସହି ପାରିଲାନି ଆଉ । ପୁଣି ବାପ ଘରକୁ ଚାଲିଗଲା ।

କମ୍ମ କୁ ଆଦର ଦିନ କାଟିଲା ଗଣ୍ଡେଇ । ଦିନେ ଦାଣ୍ଡ ଦୁଆରେ ବସି କାନ୍ଦୁଛି, ଜଣେ ଜ୍ୟୋତିଷ ଆସି ପହଞ୍ଚିଲା ।

ସେ ଗଣ୍ଡେଇକୁ ଦେଖି ହସିଲା ।

ଖୁବ୍ ଜୋରରେ ହସିଲା ।

ତାର କିମ୍ଭୂତ କିମାକାର ବେଶଭୂଷାକୁ ଦେଖି ଗଣ୍ଡେଇ ପ୍ରଥମେ ଟିକିଏ ଡରିଗଲା । ଗୋଟିଏ ପାଖରେ ଦାଢ଼ି ଅଛି । ଗୋଟିଏ ପାଖରେ ନାହିଁ । ନାକ ପୁଡ଼ାରେ କଳାଟୋପି । ମୁଣ୍ଡରେ କାଉ ହାଣିଲା ପରି ବାଳ କଟା ହୋଇଛି । ପୁରୁଷ ହୋଇବି ମାଇପୀ ଶାଢ଼ୀ ପିନ୍ଧିଛି ।

ଅଧା ଓଡ଼ିଆ ଅଧା ହିନ୍ଦି ମିଶା କଥା କହୁଛି ।

ତଥାପି—

ଗଣ୍ଡେଇ ପଚାରିଲା—"ମହାଶୟ, ହସିଲେ କାହିଁକି ?"

ଜ୍ୟୋତିଷ କହିଲା—"ମୁଁ କାହିଁକି ହସିଲି ସେ କଥା କହିଲେ ତୁମେ କ'ଣ ଭାବି ପାରି ?"

ଗଣ୍ଡେଇ କହିଲା—"ନା, ମୁଁ କିଛି ଭାବିବି ନାହିଁ ।

ତୁମେ ଯାହା ଭାବୁଛ, ତାହା କୁହ ।

ଜ୍ୟୋତିଷ କହିଲା—"ତେବେ ଶୁଣ ।

"ତୁମର ସ୍ୱାମୀ ବେଶି ଘୁଙ୍ଗୁଡ଼ି ମାରନ୍ତି ନା ?"

"ହଁ"

"ତାଙ୍କ ପାଟିରୁ ଖୁବ୍ ଦୁର୍ଗନ୍ଧ ବାହାରେ ନା ?"

"ହଁ"

"ସେ ଏକ ଗଜମୂର୍ଖ, ଚଲଣା ଚୋର, କପଟ କରି ତୁମକୁ ବିଭା ହୋଇଥିଲେ ନା ?"

"ହଁ"

ଏଥର ପୁଣି ଜୋରରେ ହସିଲା ଜ୍ୟୋତିଷ ।

ଜ୍ୟୋତିଷ କଥାକୁ ଭାରି ବିଶ୍ୱାସ ଗଲା ଗଣ୍ଡେଇ ।

ଦିନେ —

ଜ୍ୟୋତିଷ କହିଲା—"ତୁମେ ଯଦି ପୁଣି ତୁମ ସ୍ୱାମୀଙ୍କ ନିକଟକୁ ଯାଅ, ତେବେ ନିଶ୍ଚୟ ବିଧବା ହେବ । ଜ୍ୟୋତିଷ ପ୍ରେମରେ ପଡ଼ିଲା ଗଣ୍ଡେଇ ।

ଘର ଛାଡ଼ି ତା' ସାଙ୍ଗରେ ପଳାଇଗଲା । ଯେଉଁଦିନ ଜ୍ୟୋତିଷ ନିଜର ସ୍ୱରୂପ ପ୍ରକାଶ କଲା, ସେଦିନ ଗଣ୍ଡେଇ ଜାଣିଲା, ଜ୍ୟୋତିଷ ଆଉ କେହି ନୁହେଁ, ସେ ତାର ସ୍ୱାମୀ ଗାଣ୍ଡୁଆ ।"



# ଜଣର ମହାତ୍ମ୍ୟ

ଆପଣ କେବେ ତାଙ୍କୁ ଦେଖିଛନ୍ତି ?

ଆପଣ କ'ଣ କେବେ ତାଙ୍କୁ ଚିହ୍ନିଛନ୍ତି ?

ମୁଁ ଯାହାଙ୍କ କଥା କହିବାକୁ ଯାଉଛି ସେ ଏକ ଅଦ୍ଭୁତ ମାନବ ।

ତାଙ୍କୁ ଦି' ବିଧା ମାରନ୍ତୁ ସେ ସହିବେ । ଦି' କଥା କୁହନ୍ତୁ ସେ ଚୁପ୍ ହୋଇ ରହିବେ ।

ମାତ୍ର—

ସେ କେବେ ଆପଣଙ୍କୁ ବାଟରେ ଘାଟରେ ଦେଖିଲେ, ଝଷ୍ଟସୃଷ୍ଟ ଅଟକାଇ, ଯାହା ଅଂଗେ ନିଭାଇଛନ୍ତି ତାହା ନ କହି ଆଦୌ ଛାଡ଼ିବେ ନାହିଁ ।

ଆପଣ ବିରକ୍ତ ହୁଅନ୍ତୁ, ବିଦ୍ରୂପ କରି କୁହନ୍ତୁ, ନାସିକା କୁଞ୍ଚନ କରି ମୁହଁ ବୁଲାଇ ନିଅନ୍ତୁ, ତଥାପି ସେ ଅନୁଭୂତ ଆଉ ଅଭିଜ୍ଞତା ନାମରେ ବହୁ ତାତ୍ତ୍ୱିକ ଯୁକ୍ତି ବାଢ଼ି, ଶ୍ରୁତି ଯୁଗଳକୁ ଆହାର ଯୋଗାଇ ନୟନ ମନକୁ କରି, ପ୍ରଶଂସା ପାଇବାକୁ ଦାବି ବାଢ଼ିବେ ।

ତାଙ୍କୁ କିଛି ନ ପଚାରିଲେ ବି, ସେ ଡିଙ୍କିଶାଳଠାରୁ ଢେଙ୍କାନାଳ ଯାଏ ସବୁକଥା କହି ଚାଲିବେ ।

ତାଙ୍କୁ ନୟନ ନ ଦେଲେ ବି ପୂର୍ଣ୍ଣ ଆସ୍ଥାଭାଜନ ହେବା ପାଇଁ ନିଜ କୁଳ ବର୍ଦ୍ଧନ ପୁତ୍ର ଶ୍ରୀମାନ୍ ଗୋପାଳ ଚନ୍ଦ୍ରଠାରୁ ଆରମ୍ଭ କରି, ନିଜର ସହଧର୍ମିଣୀ, ବ୍ୟଗ୍ର ବିଲମ୍ବିତ ବାହୁରେ ଆଲିଙ୍ଗନ ପାଇଁ ଅକୁଣ୍ଠ ଆହ୍ୱାନ କାରିଣୀ, ପୌଢ଼ତ୍ୱର ଶୀତଳ ନାଗିନୀ, କୋମଳ ଭୂଧର ନିଭ

ପଟ୍ୟାଧରୀ, ସୁଶ୍ରୀ ଶ୍ରୀମନ୍ତି ମହିଷାମର୍ଦ୍ଦିନୀ ଦେବୀଙ୍କ ସ୍ତଣ ପର୍ଯ୍ୟନ୍ତ ପକାଇ ଯିବେ ।

ସେ ଯାହା କହିବେ ତାହା ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ଶପଥ ନେବେ ।

ଅବଶ୍ୟ—

ସେ ଯାହା କହିବେ ତାହା ସେ ତାଙ୍କ ନିଜ ଦାୟିତ୍ୱରେ କହିବେ । ସେଥିପାଇଁ କେହି ଦାୟୀ ହେବେ ନାହିଁ ।

ତେବେ—

ଆପଣ ଯାଞ୍ଚ ମନ, ପଚାଶ ପ୍ରକୃତିକୁ ପଚାରି, ପୁରୁଷକାର ସହିତ ପରାମର୍ଶ କରି, ସ୍ଥିର ଚିତ୍ତରେ ତାଙ୍କ କଥାକୁ ଆପାତତଃ ବିଶ୍ୱାସ ଯୋଗ୍ୟ ବୋଲି ଆପଣ ଗ୍ରହଣ କରିପାରନ୍ତି ନଚେତ ନାହିଁ । ସେଥିରେ ତାଙ୍କର କିଛି ଯାଏ ଆସେ ନାହିଁ ।

ସତ୍ୟ ଅନେକ ସମୟରେ ଯେ ମନଗଢ଼ା, ଆକାଶ କୁସୁମ ତୋଳା କାହାଣୀ ଓ ଉଦ୍ଭଟ କଳ୍ପନାଠାରୁ ଆହୁରି ଜୀବନ୍ତ, ଆହୁରି ତଥ୍ୟ ପୂର୍ଣ୍ଣ, ଆଶ୍ଚର୍ଯ୍ୟ ଓ ଚମକପ୍ରଦ ସେ କଥା ସେ ବିଶ୍ଳେଷଣ କରି ବୁଝାଇ ଦେବେ ।

ତାଙ୍କ ଭଳି ଜଣେ ଅତ୍ୟାଧୁନିକ, ସତ୍ୟବାନ୍ ପୁରୁଷର ନାମ ଧାମ ଜାଣିବାକୁ ଆପଣ ନିଶ୍ଚୟ ଉଦ୍‌ଗ୍ରୀବ୍ ହେବେଣି ।

ଏବେ ଶୁଣିବାକୁ ସାବଧାନ ହେଉ ।

ତାଙ୍କ ନାମ ରଜନୀ ।

ହିଁ···ହିଁ···ରଜନୀ ।

ନାଆଁଟାକୁ ଶୁଣୁ ଶୁଣୁ ଆପଣ ଭାବ ସାରିବେଣି ଯେ ସେ ଜଣେ ଶାଢ଼ୀ ପିନ୍ଧା ଜୀବ ।

ହୁଏତ—

ହୋଇଥିବେ ।

କୁନ୍ତୀ, ମନ୍ଦୋଦରୀ, ପ୍ରଭୃତି ପଞ୍ଚକନ୍ୟା, ମହାପାତକ ନାଶିନୀ ମାନଙ୍କ ମଧ୍ୟରୁ ଜଣେ ବା ସୀତା, ସାବିତ୍ରୀ, ଶକୁନ୍ତଳା ପ୍ରଭୃତି ମହୀୟସୀ ମହିଳାମାନଙ୍କ ମଧ୍ୟରୁ ଅନ୍ୟତମ ।

❋

ବା—

ଗେଲି, ଗାଣ୍ଡେଇ, ଗଧୀ, ପିଟେଇ ଙ୍କ ସାଙ୍ଗ

ବା—

ଆଧୁନିକା ଷ୍ଟ୍ରିମେଲି, ଏନି, ରେନି, ଟେମି, ଡେଜି, ଡଲି, ଲିଲି, ଜଲି ପ୍ରଭୃତି ଟପଲେସ୍ ପରିହରଣକାରିଣୀ ହାଇ ହିଲ୍, ସ୍ୟାଣ୍ଡଧାରଣୀ— ପ୍ରେମିକା ସାଜିବା ପାଇଁ ଆଗୁଆଁ ପ୍ରତିଶ୍ରୁତି ଦାୟିନୀ-ଗଣ ଦିଆ ପ୍ରୀତି ଛୁରି ହାଣିଆମାନଙ୍କ ମଧ୍ୟରୁ ଜଣେ ।

ମାଈ—

ସେ ଯେ ଜଣେ ସୁନାଖିଲମରା ଗୁମୁଦାନ୍ତିଆ, ଜହ୍ନିମଞ୍ଜିଠାରୁ ଗୋରି, ଗଦର୍ଭଗଳା, ସବସ୍ତ୍ର ଷଣ୍ଢ ମାର୍କା ପାଞ୍ଚହାତିଆ ମର୍ଦ୍ଦ । ତାଙ୍କ ପିତାଙ୍କ ନାମ ଛଇଳାକାନ୍ତ ଛୁଆଳ ସିଂ ଓ ତାଙ୍କ ନାମ ଭଜମାକାନ୍ତ ଛୁଆଳ ସିଂ ।

ଶ୍ରଦ୍ଧାରେ—

ସମସ୍ତେ ତାଙ୍କୁ ଡାକନ୍ତି ଭଜମା !

ସେ ତଥ୍ୟ ଓ ତତ୍ତ୍ୱର ଗୋଟିଏ କଂପ୍ୟୁଟର ମେସିନ ।

ତାଙ୍କର ନିଶଟା ଏକଦମ୍ ଐତିହାସିକ ନିଶ । ଆପଣ ରାଣା ପ୍ରତାପଙ୍କୁ ଦେଖିଛନ୍ତି ପରା ?

ଯଦି ଦେଖି ନ ଥିବେ, ଦୟାକରି ଐତିହାସିକ କେଦାରନାଥ ମହାପାତ୍ରଙ୍କ ମାଟ୍ରିକ ଇତିହାସ ଛପନ ପୃଷ୍ଠା ଖୋଲନ୍ତୁ ।

ବା—

ଶିବ ପ୍ରସାଦ ଦାଶଙ୍କ ମାଧ୍ୟମିକ ଇତିହାସର ବୟାଅଶି ପୃଷ୍ଠା ଓଲଟାନ୍ତୁ ।

ନିଶ ହଳକ ଦେଖିଲେ ଆପଣଙ୍କ ମନବୋଧ ହୋଇଯିବ ନିଶ୍ଚୟ । ନିଶ ତ ଅନେକ ରକମର ।

ଥାକୁଲୁ ପୁଞ୍ଜିଆ ନିଶ, ଛେଳି କରଣ୍ଡିଆ ନିଶ, ପ୍ରଜାପତିଆ ନିଶ, ମାଗୁର ନିଶ, କଜଳପାତିଆ ନିଶ, ନମକ ହାରମୀ ନିଶ, ବୈଶ୍ୟ ଗଞ୍ଜନ ନିଶ, କାମିନୀ ଦର୍ପଗଞ୍ଜନ ନିଶ, ରାଣ୍ଡୀ ପୁଅ ଅନନ୍ତା ନିଶ, ଆମ୍ବୁଲ ଠାକାର ନିଶ, ଫଟା ରସିକିଆ ନିଶ, ସୌଖିନିଆ ନିଶ, ହାଫ୍ ନିଶ, ଛତୁଫୁଟା ନିଶ, କେଳ କଦାମ୍ବିଆ ନିଶ, ପ୍ରେମିକ ମନୋହାରଣୀ ନିଶ, ଚୋରଣୀଛଣା ନିଶ ।

ତେବେ—

ରଜନୀକାନ୍ତ କହନ୍ତି ସେ କାମିନୀ ଦର୍ପ-ଗଞ୍ଜନ ନଖର ସୋଲ୍ ପ୍ରୋପ୍ରାଇଟର ।

ଏକଥା ଆପଣଙ୍କୁ ମିଛ, ତାଙ୍କୁ ସତ ଯେ—

ତାଙ୍କର ନଖ ଦେଖି ବହୁ ରୂପସୀ, ତନ୍ୱୀ, ତରୁଣୀ ତାଙ୍କ ପ୍ରଣୟରେ ଅଶାନ୍ତ ସାଗରରେ ।

ଅବଶ୍ୟ ଦାଢ଼ୀର ସଙ୍ଜ୍ଞା ଭିନ୍ନ···

ଦାଢ଼ୀ ଅନେକ ସମୟରେ ଜ୍ଞାନର ପରିଚୟନ···

ମୁନି ଋଷିମାନେ ଦାଢ଼ୀ ରଖନ୍ତି । ରବି ଠାକୁର, ବର୍ଣ୍ଣଡ୍ୟ, ଗୋପବନ୍ଧୁ ପ୍ରଭୃତିଙ୍କୁ ଦାଢ଼ୀ ଶୋଭାପାଏ ।

ଦାଢ଼ୀ ସମ୍ବନ୍ଧରେ ବର୍ଣ୍ଣନା ଆରମ୍ଭକଲେ ଗୋଟିଏ ଗୋଟିଏ-ପୋଥି ହୋଇଯିବ ।

ତେବେ—

ପ୍ରେମ କାତର ଯୁବକମାନେ ବି ଅନେକ ସମୟରେ ଦାଢ଼ୀ ରଖନ୍ତି ।

ରଜନୀକାନ୍ତ କହନ୍ତି—

ଦାଢ଼ୀକୁ ପ୍ରେମିକମାନେ ଡରନ୍ତି । ନଖକୁ ସମ୍ବର୍ଦ୍ଧନା ଜଣାନ୍ତି । ରସିକା ପ୍ରେମିକ ଯେଉଁମାନେ ସେମାନେ କୁଆଡ଼େ ପ୍ରଥମେ ନଖକୁ ଦୃଷ୍ଟି ଦେଇ ପ୍ରେମିକର ଓଜନ ଠଉରାନ୍ତି । ଆଜି ଯଦି ଶକୁନ୍ତଳା, ଦମୟନ୍ତୀ ଆନ୍ତେ ତାଙ୍କୁ ପଚାରିଲେ ସେ କହନ୍ତେ, ଦୁଷ୍ମନ୍ତ ଆଉ ନଳଙ୍କର ନଖ ଦେଖି ସେମାନେ ବିହ୍ୱଳ ହୋଇଥିଲେ କି ନାହିଁ ?

କ୍ଲିଓପାଟ୍ରାଙ୍କୁ ପଚାରିଥିଲେ ସେ କହିଥାନ୍ତେ ସେ ସିଜରଙ୍କର ଓ ଆଣ୍ଟୋନିଙ୍କର ନଖ ଦେଖି ତାଙ୍କ ପ୍ରେମରେ ପଡ଼ିଥିଲେ କି ନାହିଁ ।

ଏ ଯୁଗର ଖ୍ରୀଷ୍ଟାନ କଲର ଶ୍ୱେତଲତାଙ୍କୁ ପଚାରିଲେ ସେ ବି କହିପାରନ୍ତେ, ସେ କଣ ଦେଖି ପ୍ରଦ୍ୟୁମ୍ନ ଓ ବ୍ରଜଦେଶ ସିଂହଙ୍କ ପ୍ରେମରେ ପଡ଼ିଥିଲେ ।

ସେ ଯାହାହେଉ, ରସିକ ରଜନୀକାନ୍ତ ଅନେକ ସମୟରେ ନଖ ଯୋଡ଼ିକପାଇଁ ବହୁ ବିପଦରୁ ଉଦ୍ଧାର ପାଇଛନ୍ତି ଯେମିତି, ଏହି ନଖପାଇଁ ନିଜର ସର୍ବନାଶ ଘଟାଇଛନ୍ତି ସେମିତି ।

ଢନକର କଥା ।

ରଜନୀକାନ୍ତ ବୀର ଦର୍ପରେ କାଠଯୋଡ଼ ପାଷାଣ ପାହାଚ ଉପରେ ବସି "ବସୁସର କୁଷ୍ମଚୂଡ଼ା, ରଙ୍ଗତଳ ମନ୍ଦ ନୁହେଁ" ଗୀତଟି ଗାଉଥିଲେ ।

କାଡ଼ୁ ମର୍ଦ୍ଦନ ମର୍ଦ୍ଦରାଜଙ୍କ ଯାଆଁଳା କନ୍ୟା ଲିନା ଓ ରିନା ସେଦ୍ଧବାଟେ ଯାଉଥିଲେ । ସେ ଯେତେବେଳେ ରଜନୀକାନ୍ତଙ୍କ ନଶକୁ ଦେଖିପକାଇଲେ ସେତେବେଳେ ତାଙ୍କ ପ୍ରେମିକ ବନଶ୍ କଣ୍ଠାକୁ ମନେମନେ ଖୁମ୍ପିବାକୁ ଲାଗିଲେ ।

କ୍ରମେ କ୍ରମେ.........

ଲିନା ଆଉ ରିନା ଓ ରଜନୀଙ୍କ ମଧ୍ୟରେ ପ୍ରେମର ଯୋଗ ସୂତ୍ର ବନ୍ଧନ ସୁଦୃଢ଼ ହୋଇଗଲା ।

ଥରେ—

ଲିନା ଆଉ ରିନା ରଜନୀକାନ୍ତଙ୍କୁ ନିମନ୍ତ୍ରଣ କଲେ ତାଙ୍କ ଘରକୁ । ସମୟ, ସ୍ଥାନ ବି ଜଣାଇଦେଲେ ।

ରଜନୀକାନ୍ତ ଯଥାସମୟରେ ଉପସ୍ଥିତ ହୋଇ 'ଲିନା' 'ରିନା' ବୋଲି ଫୁସ୍‌ଫୁସ୍‌କରି ଡାକିଲେ ।

ଲିନା ରିନାର ବାପା ଅଖାଡୁ ଓ ଭାଇ ବଦ ଅକଲି ଉଠି ରଜନୀକାନ୍ତଙ୍କୁ ଉତ୍ତମ, ମଧ୍ୟମ ମନ ମୁତାବକ ପୁରସ୍କାର ଦେଲେ ।

ଆଖିରୁ ଗୋଟିଏ ଫୁଟାଇ ଦେଇ ଛାଡ଼ିଦେଲେ । ରଜନୀକାନ୍ତ ତହୁଁଆର ଦାନ ନଶ କାଟିବାକୁ ସବୁ ସାଙ୍ଗମାନଙ୍କୁ ପରାମର୍ଶ ଦେଲେ ।

ନିଜେ କିନ୍ତୁ ନଶ କାଟି ପାରୁ ନଥିଲେ ।

ଏବେ —

ସେ ଯାହାକୁ ଦେଖନ୍ତି ସେ ତାଙ୍କର କଥା ନ କହି ଛାଡ଼ନ୍ତି ନାହିଁ ।

ଆପଣ ଶୁଣନ୍ତୁ ବା ନ ଶୁଣନ୍ତୁ ସେ ନିଶ୍ଚୟ ଆପଣଙ୍କ ଆଗରେ ତାଙ୍କ କଥା କହିବେ ଓ ନଶର ମହାତ୍ମ୍ୟ ବର୍ଣ୍ଣନା କରିବେ ।



# ମୋଟା ବୁଦ୍ଧିଆର ସୂକ୍ଷ୍ମ ବିଚାର

ବଶିଆକୁ ବଶିକେଶନ ଡାକନ୍ତି ରାୟ ସାହେବ ମେଘବାହନ ହାକଡ଼ା ସିଂହ । ଏ କଥା ଶୁଣି ମେଘବାହନଙ୍କ ପରିବାରର ଲୋକେ ନାକ ଟେକନ୍ତି । ସେମାନଙ୍କ ଦେହ ସହେ ନାହିଁ ।

ପୁଣି—

ବେଶି ଚିଡ଼ନ୍ତି ଗୁମାସ୍ତା ମଣିହରଣ ବାବୁ ।

ଚୁଗୁଲିର ମୁଣି ଝାଡ଼ି ରାୟ ସାହେବଙ୍କୁ ପଟେଇ ରଖିଥାଏ ବଶି-କେଶନ । ମିଛ କଥାକୁ ସେ ଏଭଳି ଭାବରେ କଲେଇ କରି କହେ ଯେ ତାହା ତ ଶୁଣିଲେ ଯେ କୌଣସି ଲୋକ କେବଳ ବିଶ୍ୱାସ କରିବ ନାହିଁ, ତା' ଚଉଦ ପୁରୁଷ ବି ବିଶ୍ୱାସ କରିବାକୁ ବାଧ୍ୟ ହେବ ।

ଯେଉଁ ଲୋକ ଥରେ ଚୁଗୁଲି ଶୁଣେ, ସେ ସବୁବେଳେ ଶୁଣିବାକୁ କାନ ଡେରେ । ଯେଉଁ ଲୋକ ଚୁଗୁଲି କହେ ସେ ସବୁବେଳେ ଚୁଗୁଲି କହିବାକୁ ସୁଖପାଏ । ଏହି ଚୁଗୁଲି ମାଧ୍ୟମରେ ଆକାଶ କୁସୁମ ତୋଳିବାକୁ ବି ଇଚ୍ଛା କରେ ।

ଚୁଗୁଲି କ୍ଷେତ୍ରରେ ଶୁଣିବା ଲୋକ ଓ କହିବା ଲୋକ ଉଭୟେ ଉଭୟଙ୍କର ପରିପୂରକ ।

ବଶିକେଶନ ରାୟ ସାହେବଙ୍କ ପାଦ ମର୍ଦ୍ଦନ କଲାବେଳେ ପ୍ରାୟ ସବୁ କଥା କହେ । ମନର ଅଭିଳାଷ ବି ଜଣାଏ । ସେ ଦିନ କହିଲା—
"ସାଆନ୍ତେ.........।"

ରାୟ ସାହେବ ପଚାରିଲେ—"କ'ଣ କରେ ବଶିକେଶନ ?"

ବଶିକେଶନ ପୁଣି କହିଲା—"ସାଆନ୍ତେ ମୁଁ ଏକା ରହିଲେ କ'ଣ ସବୁ କାମ ଚଳାଇ ଦିଅନ୍ତି ନାହିଁ ? ଆଉ ଗୋଟିଏ ଗୁମାସ୍ତା ରହି ଏତେ ପଇସା କାହିଁକି ନେଉଛନ୍ତି ?"

ରାୟ ସାହେବ ଟିକିଏ ମୁରୁକି ହସା ଦେଇ ପଚାରିଲେ—"ଆରେ ତୁ କ'ଣ ସିରସ୍ତା କାମ କରିପାରିବୁ ?"

ବଶିକେଶନ କହିଲା—"ସାଆନ୍ତେ, ମୁଁ ଦେଖି ଦେଖି ସବୁ ଶିଖି ଗଲିଣି । ମୋତେ ସୁନ୍ଦର ଭାବରେ ରୋଜନାମଚା ଲେଖି ଆସିଲାଣି ।"

ରାୟ ସାହେବ ମନ କଥା ମନରେ ମାରି କହିଲେ—

"ଆଚ୍ଛା ଦେଖିବା ।"

ତହିଁ ଆରଦିନ ସକାଳ ।

ରାପୁ ସାହେବ ବସି ତାଙ୍କର ଜଣେ ବନ୍ଧୁଙ୍କ ସଙ୍ଗରେ କଥାବାର୍ତ୍ତା ହେଉଥାନ୍ତି । ଏତିକିବେଳେ ତାଙ୍କ ଗାଁ ପାଖ ନଈ କୂଳ ଆଡୁ ଢୋଲ ମହୁରିର ନହବତ ତାନ ଭାସିଆସିଲା ।

ରାପୁ ସାହେବ ଡାକିଲେ—"ଆରେ ବଣିଆ, ବଣିକେଶନ କରେ ?"

ବଣିକେଶନ—"ଆଜ୍ଞା, ଆଜ୍ଞା" କହି ଦଉଡ଼ି ଆସିଲା ।

ରାପୁ ସାହେବ କହିଲେ—"ଗଲୁ ନଈ କୂଳରେ ଯେଉଁ ବର ଯାଉଛି, ପଚାରି ଆସିବୁ, ସେ କୁଆଡ଼େ ଯିବେ ?"

ବଣିକେଶନ ଅଣନିଶ୍ୱାସୀ ହୋଇ ଦଉଡ଼ି ଦଉଡ଼ି ଗଲା । ତା'ପରେ ଆସି କହିଲା—"ବର ଯାଉଛି ସେ ଗାଆଁକୁ ।"

ରାପୁ ସାହେବ ଟିକିଏ ମରକି ହସା ଦେଲେ ଏବଂ କହିଲେ—ପଚାରି ଆସିବୁ, ବରର ବାପ ନାମ କ'ଣ ?"

ବଣିକେଶନ ପୁଣି ଗଲା । ବରର ବାପାଙ୍କ ନାମ ପଚାରି ଆସିଲା । ଦଶ ଥରରେ ଦଶଟି ଖବର ଆଣିଲା ।

ରାପୁ ସାହେବ ଏଥର ପାଖରେ ଠିଆ ହୋଇଥିବା ଗୁମାସ୍ତାଙ୍କୁ କହିଲେ—"ଯାଅ ସେ ବର କୁଆଡେ ଯାଉଛି ବୁଝି ଆସିବ ।"

ଗୁମାସ୍ତା ଯାଇଁ ଟିକି ନଖି ଖବର ବୁଝି ଆସି ଖବର ଦେଲେ । ରାପୁ ସାହେବ କହିଲେ—"ବଣିକେଶନ, ତୋର ଆଉ ଗୁମାସ୍ତାଙ୍କର ଭିତରେ ଥିବା ତଫାତ୍ ତୁ ବୁଝି ପାରିଲୁ ?

ବଣିକେଶନ କହିଲା—"ଆଜ୍ଞା ହଁ ।"

ରାପୁ ସାହେବ କଥାରେ ବଣିକେଶନର ମଉଡ଼ା ମହାଳଣ ପଡ଼ିଗଲା । ରାପୁ ସାହେବ ଏଥର ବଣିକେଶନକୁ ଡାକିଲେ ମୋଟା ବୁଦ୍ଧିଆ ।

ବଣିକେଶନ ବଡ଼ ଲଜ୍ଜିତ ହେଲା ମନେ ମନେ । ପ୍ରତିଜ୍ଞା କଲା ଗୁମାସ୍ତାଙ୍କ ଝିଅ ହରୁଣୀ କୁ ନଷ୍ଟେ ବାଘ ହୋଇ ଏହାର ପ୍ରତିଶୋଧ ନେବ ।

ସତକୁ ସତ ତହିଁଆର ଦିନ ପଡ଼ିଲା ଜାଗର ଓଷା । ବଣିକେଶନ ମୁଣ୍ଡରେ ଗୋଟିଏ କୌଶଳ ପଶିଗଲା । ସେ ଆଗରୁ ଯାଇଁ ଶିବ ମନ୍ଦିର ପଛ ପଟରେ ଗୋଟିଏ ଗୁମ୍ଫା ଖୋଳି ଲୁଚି ରହିଲା ।

ରପ୍ଟ ସାହେବ ଝିଅ ଆଉ ଗୁମାସ୍ତାଙ୍କ ଝିଅ ସେତେବେଳେ ସଙ୍ଗେ ନେଇ ଯାଇଁ ଶିବଙ୍କ ପାଖରେ ମୁଣ୍ଡିଆ ମାରି ଭଲ ବର ପାଇଁ ମନେ ମନେ ମନାଶି କଲେ—

ସେତିକିବେଳେ ଗୁମ୍ଫା ଭିତରେ ଥାଇ ବଶିକେଶନ କହିଲା— "ସୁନ୍ଦରୀମାନେ ଶୁଣ ଶୁଣ । ତୁମ ଭକ୍ତିରେ ମୁଁ ସନ୍ତୁଷ୍ଟ ହୋଇଛି । ତୁମକୁ ଗୋଟିଏ ଭଲ ବରର ସନ୍ଧାନ ଦେବି । ରପ୍ଟ ସାହେବଙ୍କ ଘରେ ବଶିଆ ବୋଲି ଯେଉଁ ଟୋକାଟା ଅଛି, ସେ ମୋର ପରମ ଭକ୍ତ । ତାକୁ ଯିଏ ବାହା ହେବ, ସେ ରାଜ ରାଣୀ ହେବ । ଧନ ଜନ ଗୋପଲକ୍ଷ୍ମୀ ତାର ମାଡ଼ିଯିବ । ତା' ଜୀବନ ଧନ୍ୟ ହେବ ।

ତୁମ ମନ ବଢ଼ିବାକୁ । ସେ ଆଦୌ ରାଜି ହେବ ନାହିଁ । ତୁମେ କିନ୍ତୁ ତାକୁ ଜିଦିକରି ବାହା ହେବ । ତା' ଦେହରେ ମାଡ଼ିଥିବା ମଇଳା ମଇଳା ଯାଦୁକୁ ଦେଖି ଘୃଣା କରିବ ନାହିଁ ।

ସଇକୁ ସତ ଗୁମାସ୍ତାଙ୍କ ଝିଅଠାରୁ ରପ୍ଟ ସାହେବଙ୍କ ଝିଅଙ୍କ ଯାଏ ବଶିକେଶନକୁ ବାହା ହେବାପାଇଁ ଜିଦ୍ ଧରି ବସିଲେ ।

ରପ୍ଟ ସାହେବ ଓ ଗୁମାସ୍ତା ମଣିହରଣ ବାବୁ ବଡ଼ ଅଡୁଆରେ ପଡ଼ିଲେ ।

ରପ୍ଟ ସାହେବଙ୍କ ଝିଅ କୌଣସି ମତେ ବୁଝିଲା ମାତ୍ର ଗୁମାସ୍ତାଙ୍କ-ଝିଅ ଆଦୌ ବୁଝିଲା ନାହିଁ । ସେ ଜିଦ୍ କରି ବଶିକେଶନକୁ ବାହାହେଲା ।

ବଶିକେଶନର ଆଖି ପଡ଼ିଲା ପୁଣି ରପ୍ଟ ସାହେବଙ୍କ କନ୍ୟା ଉପରେ ।

ରପ୍ଟ ସାହେବଙ୍କ କନ୍ୟା ଦିନେ ପୁଣି—

ଦିନେ ଶିବଙ୍କ ପାଖକୁ ଯାଇଁ କହିଲା—"ପ୍ରଭୁ—ତୁମ ଇଚ୍ଛା ପୂରଣ ହେଉ ।"

ଶିବ ମନ୍ଦିର ପଛପଟେ ଲୁଚିଥିବା ବଶିକେଶନ କହିଲା— "ସୁନ୍ଦରୀ, ତୁମେ ବଶିକେଶନ ଛଡ଼ା ଅନ୍ୟ କେଉଁଠି ବାହା ହେବାକୁ ରାଜି ହୁଅ ନାହିଁ । ସେ ଜଣେ ଦେବ ପୁରୁଷ ।"

ରପ୍ଟ ସାହେବ ସେତିକି ବେଳେ ଶିବ ମନ୍ଦିରକୁ ଯାଇଁ ପହଞ୍ଚିଗଲେ । ତାଙ୍କ କାନରେ ବଶିକେଶନର କଥା ପଡ଼ିଲା ।

ସେ ମନେ ମନେ ଭାବିଲେ ଶିବ କ'ଣ ମଣିଷ ଭଳି ଏପରି କଥାବାର୍ତ୍ତା କରନ୍ତି ।

ସେ ଚକ୍ଷୁ କର୍ଣ୍ଣର ବିବାଦ ଭଞ୍ଜନ ନିମିତ୍ତ ଶିବ ମନ୍ଦିର ପଛପଟକୁ ଗଲେ ।

ସେତେବେଳକୁ ବଶିକେଶନ ବରାବର କହି ଚାଲିଥାଏ—"ସୁନ୍ଦରଶ ତୁମେ ରାପୁ ସାହେବଙ୍କ କଥା ଆଦୌ ଶୁଣିବ ନାହିଁ । ତୁମେ ବଶିକେଶନକୁ ବାଘ ହେବା ପାଇଁ ଏକ ଯିଦ୍ ଧରିବ ।"

ରାପୁ ସାହେବ ଏଥର ଶିବ ମନ୍ଦିର ପଛରେ ପଡ଼ିଥିବା ବଡ଼ ପଥର ଖଣ୍ଡକୁ ନଜେ ଟେକ ଦେଲେ । ଦେଖିଲେ ବଶିକେଶନ ମୁହଁକୁ ଦୁଇ ଆଣ୍ଠୁ ଭିତରେ ତଳକୁ କରି ବରାବର କହିବାରେ ଲାଗିଛି ।— "ସୁନ୍ଦର ! ତୁମେ କାହାର କଥା ଶୁଣିବ ନାହିଁ । ବଶିକେଶନକୁ ବାଘହେବ ।"

ରାପୁ ସାହେବ, ମନ୍ଦିର ପାଖରେ ଉଠିଥିବା ବହୁଆଡ଼ି ଗଛରୁ ଗୋଟିଏ ଉପାଡ଼ି ଆଣି ଜୋରରେ ବଶିକେଶନ ପିଠିରେ ପିଟିଦେଲେ ।

ବଶି କେଶନ ଚମକି ପଡ଼ିଲା ।

ଗୁମ୍ଫା ଭିତରୁ ମୁଣ୍ଡ ଟେକି ଅନାଏ ତ, ଖୋଦ ରାପୁ ସାହେବ ଠିଆ ହୋଇଛନ୍ତି । ତାଙ୍କୁ ଘେରି ଶହ ଶହ ଲୋକ ଜମା ହେଲେଣି ।

ବଶିକେଶନ ଏଥର ଯୋଡ଼ହସ୍ତ ହୋଇ ରାପୁ ସାହେବଙ୍କ ପାଦ-ଧରି କ୍ଷମା ମାଗିଲା । ରାପୁ ସାହେବ କିଛି କଥା ଶୁଣିଲେ ନାହିଁ ।"

ଗୁମାସ୍ତା ଆସି କହିଲେ—"ଆରେ ଆରେ ଏଇମିତି କରିଚ ମୋ ଝିଅକୁ ବାଘ ହୋଇଛୁ ।"

ଗୁମାସ୍ତା ଝିଅ ଦଉଡ଼ି ଆସି ରାପୁ ସାହେବଙ୍କ ଝିଅକୁ କହୁଥିବାର ଶୁଣା ଯାଉଥିଲା—"ମିତ ତୁମେ ଜିତିଲ, ମୁଁ ହାରିଲି ।"

ରାପୁ ସାହେବ ବଶିଆକୁ ବାଧା ବିପୁଜା ମାରୁ ମାରୁ କହୁଥିଲେ— "ମୋଟା ବୁଦ୍ଧିଆ ରାଣ୍ଡି ପୁଅ ଅନାଥଟା ମୋ' ଝିଅକୁ ବାଘ ହେବା ପାଇଁ ତୋ'ର ପୁଣି ଏତେ ସୂକ୍ଷ୍ମ ବିଗ୍ଭର ?

# ଶ୍ୟାମ-ନାଗରଙ୍କ କବିତା

## ଏକ

ଶ୍ୟାମ୍ ନାଗର ଚୌହାନଙ୍କୁ ଚିହ୍ନାଇବା ଦରକାର ନାହିଁ ।

ଲେଖକ ଅର୍ଥରେ ସେ ସିନା ଲେଖକ ନୁହନ୍ତି, ଲେଖିବା ଅର୍ଥରେ ସେ ଜଣେ ଲେଖକ ।

ବିଶିଷ୍ଟ ଲେଖକ ।

ପର ଜିନିଷକୁ ନିଜର କରି, ଲୋକଲୋଚନରେ ମାୟାଞ୍ଜନ ବୋଳିବାର ବିଚକ୍ଷଣତା ତାଙ୍କର ଅସାଧାରଣ ।

ପତ୍ର ପତ୍ରିକାରେ ଶ୍ୟାମ ନାଗରଙ୍କ କବିତା ପଢ଼ିବା ପାଇଁ—ଆବାଳ-ବୃଦ୍ଧ-ବନିତା ସମସ୍ତେ ବ୍ୟାକୁଳ । ଭାଷା ତାଙ୍କର ଯେପରି ମନୋରମ ଛନ୍ଦ ସେପରି ଅନୁପମ । ଶୈଳୀ ଯେପରି ସାବଲୀଳ, ଭାବ ସେପରି ଆନନ୍ଦମୟ ।

ତାଙ୍କର କବିତାର ଆକର୍ଷଣ ଏପରି ଯେ ଥରେ ଯିଏ ପଢ଼େ ସିଏ ଶ୍ୟାମ ନାଗରଙ୍କୁ ପାଖରେ ପାଇବା ପାଇଁ ଲାଳାୟିତ ହୋଇଉଠେ । ସେ ତାଙ୍କ ପାଖରେ ଆତ୍ମ ସମର୍ପଣ କରିବାକୁ ଚାହେଁ ।

ଗୋଟିଏ କବିତା ପଢ଼ି ସେହିପରି ପ୍ରସିଦ୍ଧ ବାରିଷ୍ଟର ଓମ୍ ପ୍ରକାଶଙ୍କ ଜ୍ୟେଷ୍ଠା କନ୍ୟା ଡକ୍ଟର ଚଟକ ଚନ୍ଦ୍ର ହାସିନୀ ଦେବୀ ଶ୍ୟାମ ନାଗରଙ୍କୁ ସ୍ୱାମୀ ରୂପେ ବରଣ କରିବାକୁ ମନସ୍ଥ କଲେ ।

ନାରୀ ସ୍ୱାଧୀନତା ଯୁଗରେ କିଏବା କାହିଁକି ବାଧା ଦିଅନ୍ତା ?

ଚଟକ ଚନ୍ଦ୍ର ହାସିନୀ ଦେବୀଙ୍କ ବାସନା ପୂର୍ଣ୍ଣ ଚରିତାର୍ଥ ହେଲା ।

ଚଟକ ଚନ୍ଦ୍ର ହାସିନୀ ଦେବୀ ଆସିଲା ପରେ ଶ୍ୟାମ ନାଗରଙ୍କ ରଙ୍ଗ ଟିକିଏ ବଦଳିଗଲା ।



—ଦୁଇ—

ବନ୍ଧୁ ବାନ୍ଧବମାନଙ୍କର ସସ୍ନେହ ଅନୁରୋଧ ଏଡ଼ି ନପାରି ଶ୍ୟାମ ନାଗର କବିତା ଗୁଡ଼ିକୁ ଏକାଠି କରି ସଂକଳନର ନାମ ରଖିଲେ—

"ଆଖି ବୁଝେ ଆଖିର କଥା ।"

ବହୁ ପ୍ରକାଶକଙ୍କ ଦ୍ୱାରସ୍ଥ ହେଲେ ମଧ୍ୟ କେହି ପ୍ରକାଶ କରିବାକୁ ରାଜି ହେଲେ ନାହିଁ ।

ଜଣେ ଯଦି କହିଲେ—"କବିତା ଗୁଡ଼ିକ ନଗ୍ନ ପ୍ରେମ ମୂଳକ ।"

ଅନ୍ୟ ଜଣେ କହିଲେ—"କବିତା ବଜାର ତ ବର୍ତ୍ତମାନ ମାନ୍ଦା, ଆମେ ଯା'କୁ ଛପାଇ କରିବୁ କ'ଣ ?"

କେହି କେହି କହିଲେ—"ଆପଣ ଲେଖି ଯାଆନ୍ତୁ, ଛପାଇବା ପାଇଁ ବର୍ତ୍ତମାନ ଏତେ ବ୍ୟସ୍ତ ହୁଅନ୍ତୁ ନାହିଁ ।"

କିନ୍ତୁ............

ସାହିତ୍ୟ ରସିକ, ଗୁଣ ଗ୍ରାହକ, ବରିଷ୍ଠ ପ୍ରକାଶକ, ନବ ଯୌବନ ଫକୀର ସିଂ କମ୍ପାନୀର ସ୍ୱତ୍ୱାଧିକାରୀ ରାଧିକା ଜୀବନ ଦେଶ ପାଣ୍ଡେ ବହିଟି ପ୍ରକାଶ କରିବା ପାଇଁ ରାଜି ହେଲେ ।

ଶୋଭନ ପ୍ରଚ୍ଛଦ ପଟ୍ଟେ ଦେଇ "ଆଖି ବୁଝେ ଆଖିର କଥା" ଆତ୍ମ ପ୍ରକାଶ କଲା ।

ଶ୍ୟାମ ନାଗରଙ୍କ ମନରେ ଆନନ୍ଦ କହିଲେ ନ ସରେ ।

ଆନନ୍ଦ ।

ଆନନ୍ଦ · ଆନନ୍ଦ···

ଏଭଳି ଆନନ୍ଦ ସେ ଚନ୍ଦ୍ରିକା ଭଳି, ହାସିମାଙ୍କ ସହିତ ପ୍ରଥମ ମିଳନରେ ବି ଅନୁଭବ କରି ନଥିଲେ, କି ତାଙ୍କର ପ୍ରଥମ ପୁତ୍ର ଶ୍ରୀମାନ୍ ଗୋପାଳ ଚନ୍ଦ୍ର ଭୂମିଷ୍ଠ ହେଲା ଦିନ ମଧ୍ୟ ଅନୁଭବ କରି ନଥିଲେ । ପାଣ୍ଡୁଲିପିର କାଳି ଲେଖା ଅକ୍ଷରକୁ ଛପା ଅକ୍ଷରରେ ଦେଖି ନିଜକୁ ସୌଭାଗ୍ୟବାନ କେବଳ ମନେ କରୁନାହାନ୍ତି, ସ୍ୱର୍ଗର ଇନ୍ଦ୍ର ପଦ ଲାଭ କଲା ଭଳି ମଣୁଛନ୍ତି ।

ବାସ୍ତବରେ........

ଗାଁ ଗହଳିର କେତେ କବି ଯେ କବିତା ଲେଖି, ପ୍ରେରଣା ଅଭାବରୁ ବନଫୁଲ ପରି ମଉଳୁ ଯାଉଛନ୍ତି, ତାର ହିସାବ କିଏ ରଖୁଛି ?

ସତେ...ସତେ...

ହାତ ଲେଖା ବଙ୍କା ଟଙ୍କା ଅକ୍ଷରର କବିତାଗୁଡ଼ା – ଛପା ଅକ୍ଷରରେ ଏତେ ସୁନ୍ଦର ଦିଶେ ବୋଲି ଆଗରୁ କେବେ କଳ୍ପନା କରି ନ ଥିଲେ ଶ୍ୟାମ ନାଗର ।

—ତିନି—

"ଆଖି ବୁଝେ ଆଖିର କଥା" ପ୍ରକାଶ ପାଇବାର ପନ୍ଦର ଦିନ ପରେ ।

ଶ୍ରୀ କାଡ଼ୁମର୍ଦ୍ଦନ ବଳୀଆରସିଂ, ଏମ୍. ଏ ଲେଖିଛନ୍ତି—

"ଆଖି ବୁଝେ ଆଖିର କଥା ପୁସ୍ତକର ୫୪ ପୃଷ୍ଠାରେ ଯେଉଁ ସନେଟ୍‌ଟି ବାହାରିଛି ତା'ର ଲେଖକ ମୁଁ । ମୋ'ର ଜଣେ ଶ୍ରେଣୀ ବାନ୍ଧବୀଙ୍କୁ ନଜର କରିବା ପାଇଁ ଛାତ୍ରାବସ୍ଥାରେ ଏ କବିତାଟିକୁ ଲେଖିଥିଲି ।"

ସୁଶ୍ରୀ ଅଧ୍ୟାପିକା ଚୁଚନ୍ଦ୍ରୀ ପାହାଡ଼ ସିଂ ବିରକ୍ତି ପ୍ରକାଶ କରି ଲେଖିଛନ୍ତି —

"ଆଖି ବୁଝେ ଆଖିର କଥା" ପ୍ରଥମ ପୃଷ୍ଠାରେ ପ୍ରକାଶିତ କବିତାଟିର ଲେଖକ ମୋର ସ୍ୱାମୀ ମାନ-ଭଞ୍ଜନ ପାହାଡ଼ ସିଂହ । ଏହା କିପରି ଅନ୍ୟ ଲୋକ ନାମରେ ପ୍ରକାଶିତ ହେଲା ?"

ପଣ୍ଡିତ କାମିନୀ-ଦର୍ପ-ଗଞ୍ଜନ ଭଟ୍ଟାଚାର୍ଯ୍ୟ, ସ୍ମୃତି, ବ୍ୟାକରଣତୀର୍ଥ ଲେଖିଛନ୍ତି—"କହୁଦିନ ତଳେ ପ୍ରୀତି-ପ୍ରଦାୟିନୀ ପ୍ରେସରେ 'ପ୍ରୀତିର ସ୍ୱାଦ' ନାମକ ମୋର ଏକ ପୁସ୍ତକ ପ୍ରକାଶିତ ହୋଇଥିଲା । ସେ ପୁସ୍ତକର ଭୂମିକା ଯାହାଥିଲା, ବର୍ତ୍ତମାନ ପ୍ରକାଶିତ "ଆଖିର କଥା ଆଖି ବୁଝେ"—ପୁସ୍ତକର ଭୂମିକା ଅବିକଳ ସେୟା ।"

ସଦ୍ୟ ପ୍ରକାଶିତ ପୁସ୍ତକରେ ସନ୍ନିବେଶିତ ବା'ଷଠିଟି ଯାକ କବିତା ଉପରେ କିଛି ମନ୍ତବ୍ୟ ବାହାରି ଖବର କାଗଜ ସ୍ତମ୍ଭ ପୂରିଗଲା ।

ପ୍ରକାଶକ ମହାଶୟ ମୁଣ୍ଡରେ ହାତ ଦେଇ ବସିଲେ ।

ହଜାରେ ଟଙ୍କା ପାଣିରେ ପଡ଼ିଗଲା ।

ଚହଟ ଚନ୍ଦ୍ର ହାସିନୀ ଦେବୀ କହିଲେ —"ତୁମ ଦ୍ୱାରା କବିତା ଲେଖା ହେବ ନାହିଁ । ଗପ ଲେଖ ।"

ଶ୍ୟାମ ନାଗର ଘରଣୀଙ୍କ କଥାରେ ଅସ୍ତିସୂଚକ ମୁଣ୍ଡ ହଲାଇଲେ ।

—ଗୃର—

ଶ୍ୟାମ ନାଗର ଏଥର କବିତା ଛାଡ଼ି ଗପ ଲେଖିଲେ ।

ଗପ ଲେଖି ସାରି ଆଉ ଏଥର ସିଧା ପତ୍ର, ପତ୍ରିକାକୁ ପଠାଇଲେ ନାହିଁ । ବସ୍ତୁରବନ୍ତ ପାଠକ ପାଠିକାଙ୍କ ମତାମତ ପ୍ରତି ତାଙ୍କର ଚିତ୍ତରେ ଆଶଙ୍କା ଜାଗ୍ରତ ହେଲା ।

ସେ ଗପଟିଏ ଲେଖି ସାରି ନିଜେ ଆଠ ଦଶ ଥର ପଢ଼ିଲେ ।

ତା'ପରେ........

ତାଙ୍କ ମାନସ ପିଞ୍ଜରାର ପ୍ରେମ ଶୁକ ପକ୍ଷୀ, ନିତ୍ୟ ନିଶାର୍ଦ୍ଧ— ପ୍ରାଣ ଉଲ୍ଲାସିନୀ, ପ୍ରିୟତମା, ଶ୍ରୀମତୀ ଚନ୍ଦ୍ର ହାସିନୀ ଦେବୀଙ୍କୁ ଦେଇ ଦଅନ୍ତି ।

ସେ ଶୋଇବା ପୂର୍ବରୁ ପଢ଼ନ୍ତି ।

ଯଦି ଶ୍ୟାମ ନାଗରଙ୍କୁ ନିଦ ଲାଗି ଯାଇଥାଏ, ଖୁବ୍ ଜୋରରେ ସେ ହଲାଇ ଦେଇ କହନ୍ତି—

"ହେଇଟି ଶୋଇଲଣି ନା କ'ଣମ ?"

ପିହୁଳା ପୀଡ଼ିତ ପିଲାଙ୍କ ଭଳି ଶ୍ୟାମ ନାଗର ଅନାଇ ରହନ୍ତି ଏକ ଧ୍ୟାନରେ ଚଟକ ଚନ୍ଦ୍ର ହାସିନୀ ଦେବୀଙ୍କୁ । ଚଟକ ଚନ୍ଦ୍ର ହାସିନୀ କହନ୍ତି—

"ଗପଟି ଭଲ ହୋଇଛି । ନାୟିକାଟା ମରହଟ୍ଟିଆଣୀ ହୋଇଗଲା । ଅଲଟ୍ରା ମଡ଼ର୍ଣ୍ଣ ଗର୍ଲ କରି, ତାକୁ କାଠଯୋଡ଼ି କୂଳକୁ ନେଇ, କାଠଯୋଡ଼ିରେ ଜ୍ୟୋତ୍ସ୍ନା ବିହାର କରାଇ ପାରିଲ ନାହିଁ । ପୋଷ୍ଟ ଗ୍ରାଜୁଏଟ ଛାତ୍ରୀ କରି ନାଇଟ କ୍ଲବକୁ ନେଇ, 'ରମ'ର ସ୍ୱାଦ ଚଖାଇ, ସୀଧୁ-ବିହ୍ୱଳ ଉନ୍ମତ୍ତ ଯୁବକ ବନ୍ଧୁଙ୍କ ବାହୁ ମୃଣାଳକୁ ଧରାଇ ବଲଡ୍ୟାନ୍ସ ନଚାଇ ପାରିଲ ନାହିଁ । କ୍ଲ ଓପାଟ୍ରା ପରି ଉଚ୍ଛଳ ଯୌବନା କରାଇ ପାରିଲ ନାହିଁ ।

ଖ୍ରୀଷ୍ଟାନ୍ କଲେଜର ପରି ହାସ୍ୟମୟୀ କଲ୍ପଲି ବିଶ୍ୱର ବିମୁଗ୍ଧ ଯୁବ ଜନ ଚିତ୍ତ ସମୁଦ୍ରରେ ତରଙ୍ଗ ଉଚ୍ଛ୍ୱାଳ ସୃଷ୍ଟି କରି ପାରିଲ ନାହିଁ । ରିତା ଫାରିଆ ବବ ହୋପଙ୍କ ପାଖରେ ଜୁଆରିଆ ହସ ହସିଲପରି ଟିକିଏ ମନ ଖୋଲି ହସ ହସାଇ—ପାରିଲ ନାହିଁ । ଲାବଣ୍ୟବତୀ ପରି ଲାବଣ୍ୟ ମୟୀ କରି ହିଷ୍ଟପ୍ୟା ଯାମିନୀରେ ନାଗର ମୋହନ କାନରେ ମନକଥା କୁହାଇ ପାରିଲ ନାହିଁ ।

ନାୟିକାଟାକୁ ପୁଣି ଏପରି ପ୍ରେମ ପାଗଳ କରି ଛାଡ଼ି ଦେଲ ଯେ ସେ ଆକାଶବାଣୀର ଫଟା ଟେପ୍ ରେକର୍ଡ ପରି—"ବୋଲ ରାଧା, ବୋଲ ସଙ୍ଗମ ହୋଗାକ ନେହିଁ—ହୋଗାକ ନେହିଁ...ହୋଗାକ ନେହିଁ ?"

ହୋଗାକ ନାହିଁ ?...

କହି କହି ଥକିଛି ।

ଶ୍ୟାମ ନାଗର ସବୁ ଶୁଣନ୍ତି । ନିରୁତ୍ତର ହୁଅନ୍ତି । ତାଙ୍କ ବିଦ୍ୟା ବୁଦ୍ଧିକି ମନେ ମନେ ତଉଲନ୍ତି । ନିଜର ଘରଣୀଙ୍କ ବିଦ୍ୟା ବୁଦ୍ଧି ପାଇଁ ତାଙ୍କୁ ଖୁବ୍ ପ୍ରଶଂସା କରନ୍ତି ।

ମାନ...

ହାସ୍ୟ...

ଘରଣୀ ଚଟକ ଚନ୍ଦ୍ର ହାସିମା ଦେବୀ ଜାଣନ୍ତି ନାହିଁ—ଯେ ଶ୍ୟାମ ନାଗର ଜଣେ ଦରପାଠୁଆ, ଚଳଣୀ ଷ୍ଟୋର ।

ଗପ କାଗଜଟିକୁ ଚିରି ଘରଣୀ ଅଲିଅଳ ପୁଅ ଶ୍ରୀମାନ୍ ଗୋପାଳ ଚନ୍ଦ୍ରର ପୁରୀଷ ପୋଛରେ ଲଗାନ୍ତି ।

ଶ୍ୟାମ ନାଗର ଦେଖନ୍ତି । .

ରକ୍ତ ଗୁଣ୍ଡଳ ଘୋଟିବାଇ ରହନ୍ତି ମାତ୍ର କିଛି କହି ପାରନ୍ତି ନାହିଁ ।

—ପାଞ୍ଚ—

ସେ ପୁଣି ଗପ ଲେଖିବା ପାଇଁ ପ୍ଲଟ ଖୋଜନ୍ତି । ଅଣ ନିଶ୍ୱାସୀ ହୋଇ କଳ୍ପନାରେ ଦୁନିଆଁ ପାରିରୁ ଦରିଆ ପାରି ଦଉଡ଼ନ୍ତି । ସେ ବାସ୍ତବତାର ପରିପ୍ରେକ୍ଷୀରେ କଲେଜ କମନରୁମ୍‌ରୁ ବନ୍ଦର ମେରାଇନ୍ ଡ୍ରାଇଭ୍ ଯାଏଁ ଧାଆନ୍ତି ।

କେଉଁଠି ତାଙ୍କର ନାୟିକା ପସନ୍ଦ ହୁଅନ୍ତି ନାହିଁ ।

ପୁଣି —

ନର୍ସ ହଷ୍ଟେଲ ଓ ଅନାଥାଶ୍ରମର ପଛ ପାଖରେ ଯାଇଁ ନାୟିକା ଅନ୍ୱେଷଣ କରନ୍ତି ।

ତଥାପି—

ନାୟିକା ମନକୁ ଯାଆନ୍ତି ନାହିଁ ।

ଶେଷରେ ନିରାଶ ହୋଇ ଘରକୁ ଫେରନ୍ତି ।

ନପୁଂସକ ମାଇଚିଆଙ୍କୁ ନାୟିକା ରୂପେ ଗ୍ରହଣ କରି ଗପ ଲେଖନ୍ତି । ତାଙ୍କର ରୂପ ବର୍ଣ୍ଣନା କଲାବେଳେ ମହାଅଡୁଆରେ ପଡନ୍ତି । କୌଣସି ମତେ ଗପ କୋଣାର୍କ ମୂର୍ତ୍ତିମରେ ।

ଚଟକ ଚନ୍ଦ୍ର ହାସିମା ପଢ଼ି ମତ ଦିଅନ୍ତି—"ତୁମ ଦ୍ୱାରା କବିତା, ଗପ ଲେଖା ହେବ ନାହିଁ । ତୁମେ କେବଳ "ଚରଣ ଗ୍ରହଣ ଚକ୍ରବର୍ତ୍ତୀ" ହେବାକୁ ସମର୍ଥ ।



## ବ୍ରହ୍ମ ରାକ୍ଷସର କରାମତି

ବିପ୍ରଲମ୍ଭ ଜଣେ କବି ।

ତା' ସମ୍ପର୍କରେ ଏଇ ହେଉଛି ଯଥେଷ୍ଟ ପରିଚୟ ।

ସେ ଏକାଧାରରେ ଜଣେ ଭାବୁକ, ଗାଳ୍ପିକ, ସାମ୍ବାଦିକ, ସମାଲୋଚକ, ମନସ୍ତାତ୍ତ୍ୱିକ ଓ ଯୁଗାନ୍ତକାରୀ ପ୍ରେମିକ ।

ତା'ର ହସ ହସ ମୁହଁ ଦେଖିଲେ ବନ୍ଧୁମାନେ ବଶ ହୁଅନ୍ତି । ତାର ପାଣ୍ଡିତ୍ୟ ପୂର୍ଣ୍ଣ ଭାଷଣ ଶୁଣିଲେ ବିବୁଧ ଶ୍ରୋତାମାନେ ମୁଗ୍‌ଧ ହୁଅନ୍ତି । ତାର ସମାଲୋଚନା ପଢ଼ିଲେ ପଣ୍ଡିତମାନେ ଶ୍ରଦ୍ଧା କାଢ଼ନ୍ତି । ତାର ଭଙ୍ଗୀପୂର୍ଣ୍ଣ ବକ୍ରୋକ୍ତି ଶୁଣିଲେ ପ୍ରେମିକାମାନେ ସ୍ୱିବନ୍ଦ୍ରିକ ରୋମାଞ୍ଚରେ ସ୍ନାହାନ ସାରନ୍ତି । ତାର ଗପ ପଢ଼ିଲେ ପ୍ରୋଷିତ ଭର୍ତ୍ତୃକାମାନେ ଆସଙ୍ଗ ଲିପ୍‌ସାରେ ଅଧୀର ହୁଅନ୍ତି, ତାର ଲେଖା ପଢ଼ିଲେ ନୂତନ ବା ପୁରାତନ କବିମାନେ କଲମ ଗୁଡନ୍ତି, ତା'ର କାବ୍ୟ କବିତା ପଢ଼ିଲେ ଅନୂଢ଼ାମାନେ ଫୁଲଶରର ଷଣ୍ଢ଼ ଆସୀ ଆକ୍ରମଣରେ ଦଳମଳ ହୋଇଯାନ୍ତି......

ବିପ୍ରଲମ୍ଭ ସମ୍ପର୍କରେ ଯେଉଁମାନେ ଆସୁଛନ୍ତି ସେମାନେ ନିଶ୍ଚୟ ଜାଣନ୍ତି ସେ ସେ ଏକ ଅଦ୍ଭୁତ ଧରଣର ଲୋକ । ଘରକଥା ପଦାରେ ପକାଇ, ଅତି ଅଳ୍ପ ବୟସରେ ଆବାଳବୃଦ୍ଧବନିତାଙ୍କୁ ଉରାଇ, ଯଦି କେହି ନାଆଁ କରଥାଏ, ତାହାହେଲେ ସେହି ହେଉଛି ବିପ୍ରଲମ୍ଭ । ତାର ଦୌରାତ୍ମ୍ୟରେ ଛବିଲ ଉତ୍କଳର କେହି ନା କେହି ଉତ୍ପୀଡ଼ିତ, କେହି ନା କେହି ପ୍ରପୀଡ଼ିତ ।

ଯେଉଁଠି ଦେଖ, ସେଇଠି ବିପ୍ରଲମ୍ଭ ।

ସେ ବେଳେ ବେଳେ ଦେଖିବାକୁ ମିଳେ ନେଉଟିଆ ପଣ୍ଡାଳରେ, କୋଇଲି ବୈକୁଣ୍ଠରେ, ସତ୍ତା ଚଉଡ଼ାରେ, ଗୋରା କବରରେ, କଟକ

ଚଣ୍ଡୀରେ, କନକା ଲାଇବ୍ରେରୀରେ, ଖାନନଗରରେ ବା ଚୁନା ମିଆଁ ବସା ପାଖରେ ।

ବେଳେ ବେଳେ ସେ କଡ ମାରଣ ଚନ୍ଦ୍ର ଧର ଅଣବିଶ୍ୱାସୀ ହୋଇ ଟାଉନ ହଲ ବା ନାଗସଙ୍ଘ ସଦନକୁ ପଶିଯାଏ । କେତେବେଳେ ପୁଣି ଶାରଳା, ଭଞ୍ଜ, ଅଭିମନ୍ୟୁ, ଭକ୍ତ ଚରଣ, ଜଗନ୍ନାଥ, ରାଧାନାଥ ନନ୍ଦକିଶୋରଙ୍କ ପଛରେ ଚିଙ୍କ ମାରେ ।

ସେ ଲୋକଟି ଯେପରି ଅଦ୍ଭୁତ, ତାର ଆଦବ କାଇଦା ସେପରି ବିସ୍ମୟକର । କେତେବେଳେ ଯଦି ସେ ବ୍ରାଉନିଙ୍ଗ ଷ୍ଟାଇଲ୍‌ରେ ନିଜକୁ ସଜାଏ, ଆଉ କେତେବେଳେ ଓ୍ୱାଲଟ ହୁଇଟି ମ୍ୟାନଙ୍କ ପଥ ବାଛି ନିଏ ।

କାର୍ଲାଇଲ, ନିଉଟନ, ମ୍ୟାଥିଉ, ଆରନୋଲଡ୍, ଓ୍ୱାର୍ଡସ ଓ୍ୱାର୍ଥ, ଶେଲି, କିଟସ୍, ଲଙ୍ଗଫେଲୋ, ଦାନ୍ତେ, ଗେଟେ, ଡଷ୍ଟୋଭସ୍କି, ହୋମର, କାଳିଦାସ, ବାଲ୍ମୀକି ବାଣଭଟ୍ଟ, ରବିଠାକୁର, ଶାରଳା, ଭଞ୍ଜ ପ୍ରଭୃତି ସମସ୍ତେ ତାର ମୁଖ ମଣ୍ଡନ କରନ୍ତି । ସନ୍ଧେହିଁଶ ଅମଳରୁ ତା'ଙ୍କ ଯାଏ କୌଣସି ଖ୍ୟାତ ମାତ୍ର ତା'ପାଖରୁ ବାଦ ପଡ଼େନା ।

ତେବେ —

ଲୋକେ କହନ୍ତି ସେ ଅତି ମାତ୍ରାରେ ସ୍ୱାର୍ଥ ପର । ମେଘ ଯୁଆଡ଼କୁ ହୁଏ, ଛତା ସିଆଡ଼କୁ ଦେଖାଏ ।

ସେ ଧନକୁ ଯେପରି ଘୃଣାକରେ — ଦାରିଦ୍ର୍ୟକୁ ସେପରି ସମ୍ପଦ ବୋଲି ମଣେ ।

ବିପ୍ରଲମ୍ଭ ଆଉ ଗବ୍‌ଦୁଲ ଦୁହେଁ ଖୁବ ସାଙ୍ଗ, ଆଜି ନୁହେଁ ଆଜନ୍ମ ସାଥୀ, ଯାହା କରନ୍ତି ଉଭୟେ ବରବ ବରବ ହୋଇ କରନ୍ତି ।

ବିପ୍ରଲମ୍ଭ ସମସ୍ତଙ୍କ ହୃଦୟକୁ ଜୟ କରିବାକୁ ଚେଷ୍ଟା କରିଛି । ଯୁଗ ଯୁଗ ଧରି ମାତ୍ର ନିଜ ଘରଣୀଙ୍କ ହୃଦୟ ଜୟ କରିବାକୁ ଯାଇ ଅନେକ ସମୟରେ ସେ ଚିତ୍ ପଟାଙ୍ଗ ମାରିଛି ।

ଥରେ ସେ ଘରଣୀ ଅନ୍ତଃସତ୍ତ୍ୱା ଥିଲାବେଳେ---

ପୁଅ ହେବ କି ଝିଅ ହେବ ବୋଲି ଉଭୟଙ୍କ ଭିତରେ ଦ୍ୱନ୍ଦ୍ୱ ଉପୁଜି—ଅନେକ ଦିନଧରି କଳି କଜିଆର ସୂତ୍ର ପାତ ହେଲା ।

ଉଭୟେ ଗୋଟିଏ ଘରେ ରହି ମଧ୍ୟ ଦେଢ଼ଶୂର ଭାଇ ବୋହୂ ପରି ଚଳିଲେ । 'ଛଣ ପଗୁଡ଼ିଇ ବତାକୁ, ଦାଳ ଯିବ କେଉଁ ହାତାକୁ" ଭଳି କଥାବାର୍ତ୍ତା ହେଲେ ।

କେତେ ଲୋକ କେତେ କଥା କହିଲେ ।

କିଏ ଯଦି କହିଲା—"ଘରଣୀଙ୍କି କିଏ ଔଷଧ କରିଛି ।"

କିଏ ତେବେ କହିଲା—"ଗୁଣି ଗାରଡ଼ିର କାମ ଏ ।"

ବିପ୍ରଲମ୍ଭ ଦିନେ ତାର ବନ୍ଧୁ ଗବଦୁଲ ପାଖରେ ଏକଥା କହିଲା ।

ଗବଦୁଲ କହିଲା ଆଚ୍ଛା ମୁଁ ତୁମ ଦୁହିଁଙ୍କର ମାନ ଭଞ୍ଜନ କରିଦେବି କିନ୍ତୁ···

ଗୋଟିଏ କଥା ତୋତେ କରିବାକୁ ହେବ । ତୁମେ ଦୁଇଜଣ ଶୋଇଲା ଘରକୁ ଗଲାପରେ—

ତୁ' ଅନ୍ଧାରରେ ଉଠି ଚାଲି ଆସିବୁ । ମୁଁ ଯାଇ ତୋ' ଜାଗାରେ ଶୋଇ ପଡ଼ିବି ।

ତା'ପରେ ଦେଖିବୁ ମଜାଟା···

ଠିକ୍ ସେୟା ହେଲା···

ଗବଦୁଲ ଆଗରୁ ଚିଡ଼ିଆଖାନାରେ ଚାକିରି କରି ଥିଲା । ସେ ତେଣୁ ଘୋଡ଼ାର ହ୍ରେଷା ରବଠାରୁ ବ୍ୟାଘ୍ର ଗର୍ଜନ ଯାଏ ସବୁ ଜାଣେ ।

ସେ ଯେତେବେଳେ ବିପ୍ରଲମ୍ଭ ବିଛଣାରେ ଶୋଇ କୁକୁର ଭଳି ଭୁକିଲା ।

ଘରଣୀ ଚମକି ପଡ଼ି କହିଲେ—"ଇଲୋ ମାଆଲୋ କୁକୁରଟା କୁଆଡ଼ୁ ଘର ଭିତରକୁ ପଶି ଆସିଲାଣି ।"

ଗବଦୁଲ ପୁଣି ବ୍ୟାଘ୍ର ଭଳି ଗର୍ଜନ କଲା । ଘରଣୀ ଚକିତରେ ଆସି ଗବଦୁଲକୁ ବିପ୍ରଲମ୍ଭ ମନେକରି ଖୁବ୍ ଜୋରରେ ହଲାଇ ହଲାଇ ଡାକିଲେ—"ଦେଇଛି ଶୁଭୁଛି ନା କ'ଣମ, ଘର ଭିତରକୁ ଗୋଟାଏ ବାଘ କେମିତି ପଶିଛି ।"

❊

ଗବଦୁଲ ଛଳନା କରି ଘୁଙ୍ଗୁଡ଼ି ମାରିଲା ।

ପୁଣି ଘରଣୀ କହିଲେ –"ମୁଁ ତୁମର ଗୋଡ଼ହାତ ଧରୁଛି, ଟିକେ ଉଠ ଭଲା ।"

ପୁଣି ଘୁଙ୍ଗୁଡ଼ି ମାରିଲା ଗବଦୁଲ ।

ପଦାରେ ହସି ହସି ବେଦମ ହେଲାଣି ବପ୍ରଲମ୍ବ ।

ଏଥର ବଣ୍ଟା ଲଗାଇଲେ ଘରଣୀ ।

ସେ ଯେତେବେଳେ ଗବଦୁଲ ମୁହଁ ଆଡ଼କୁ ବଣ୍ଟା ଆଣିଲେ ସେତେବେଳେ ଗବଦୁଲର ଦାଢ଼ୀ ଦେଖି ଚମକି ପଡ଼ି କହିଲେ –"ଇଲୋ ମା' ଏ କିଏ—"ବ୍ରହ୍ମ ରାକ୍ଷସଟା କୁଆଡ଼ୁ ଆସି ଘରେ ପଶିଲାଣି । ଏ ଗଲେ କୁଆଡ଼େ ? ଏ କ'ଣ ସେ । ନା–ଏତ ସେ ନୁହନ୍ତି । ତାଙ୍କର ତ ଜଣ ଥିଲା । ମୁହଁସାରା ଦାଢ଼ୀ ନ ଥିଲା ।"

କବାଟ ଫିଟାଇ ଘର ଭିତର ପଦାକୁ ଘରଣୀ ବାହାରିଗଲା ବେଳେ ଝଡ଼ ବେଗରେ ବପ୍ରଲମ୍ବ ଘର ଭିତରକୁ ପଶି ଆସୁଥିଲା । ଉଭୟେ ଉଭୟଙ୍କ ଠାରେ ଏତେ ଜୋରରେ ବାଜିଗଲେ ଯେ ବାରବର୍ଷ ବିବାହିତ ଜୀବନ ଭିତରେ ଏତେ ଜୋରରେ ଦେହ ବାଜି ନଥିବ । ଗୋଟିଏ ପୁତ୍ର ସନ୍ତାନ ଜନ୍ମ ହୋଇଗଲା । ନବ ଜାତ ଶିଶୁ ତଳେ– ପଡ଼ି "କୁଆଁ କୁଆଁ ରାବ କଲା ।"

ଘରଣୀ ବପ୍ରଲମ୍ବକୁ ଧରି କାନ୍ଦିଲେ ।

ବପ୍ରଲମ୍ବ କହିଲା –"କ'ଣ'କଥା କ'ଣ ?"

ଘରଣୀ କହିଲେ –"ତୁମଠାରେ ଏତେ ଗୁଣ ଅଛି ବୋଲି ମୁଁ ଚଣ୍ଡାଳୁଣୀ ଜାଣି ନଥିଲି । ତୁମେ ସାଙ୍ଗେ ସାଙ୍ଗେ କୁକୁର ହୋଇ ଯାଉଛ, ବାଘ ହୋଇ ଯାଉଛ, ବ୍ରହ୍ମରାକ୍ଷସ ସାଜୁଛ ?

ବପ୍ରଲମ୍ବ କହିଲା···"ହିଁ ହିଁ···ତୁମେ ଆଉଦିନେ ଚୁଷା ଚୁଷି କରିବ ନାହିଁ ।"

ଘରଣୀ କହୁଥିଲେ –"ମୁଁ ମରିବ ପଛେ ଆଉ ଦିନେ ଏ ବେକୁବ୍ କାମ କରିବ ନାହିଁ ଲୋ ମାଆଗଣୀ ।"

# ଯାହାକୁ ଯିଏ ରସିଲା

ମେଘନାଦକୁ ସମସ୍ତେ କହନ୍ତି ମାଇଚିଆ ମାଗୁଣି ସାହୁ ।

କାହିଁକି ?

ସତରେ କ'ଣ ସେ ମାଇଚିଆ ?

ସତରେ କ'ଣ ସେ ମୁଣ୍ଡରେ ପରଚୁଳା ଲଗାଇ, ଶାଢ଼ୀ'ପିନ୍ଧା ନାରୀଙ୍କ ପରିବେଶ ଭୂଷା ହୋଇ, ମଲ୍ଲୀମାଳ ହାତରେ ଧରି, କଚେରି ଫେରନ୍ତା ହାକିମ, କାରଖାନା ଫେରନ୍ତା ଶ୍ରମିକ, ସିନେମା ଫେରନ୍ତା ଫଟା ରସିକମାନଙ୍କୁ ଆଖିଠାରେ ? ନଈକୂଳରେ, କେନାଲ କୂଳରେ ବ୍ଲାଉଜ କନା ପିନ୍ଧା ପ୍ରେମିକମାନଙ୍କୁ ଦେଖି ମୁରୁକି ମୁରୁକି ହସେ ? ବାଟରେ ଘାଟରେ ଦୁଲେଇ ମା, କହ୍ନେଇ ବୋଉଙ୍କୁ ଦେଖି ଡେଇଁ ଡେଇଁ ଡଗ ମେଲେ ?

କାହିଁ, ଏପରି ତ କଲାଭଳି କେବେ ତା'ର ମନେ ପଡ଼ୁନାହିଁ ?

ତେବେ.........

ଦୁଇଟି କାରଣରୁ ଲୋକେ ତାକୁ ମାଇଚିଆ ବୋଲି କହିବାର ସେ ଅନୁମାନ କରେ ।

ଏକରେ ସେ ଭଉଜା ହାତରୁ କହୁଣୀ ଖାଏ ।

ଦୁଇରେ ସେ ଶଶୁର ଘରକୁ ଯିବାକୁ ଆଦୌ ମଙ୍ଗେନା ।

ତା' ଭଉଜା ହାତରୁ ସେ କହୁଣୀ ଖାଇଲା ଲୋକଙ୍କର ସେଥିରେ ଯାଏ କେତେ, ଆସେ କେତେ ?

"ଯାହାକୁ ଯିଏ ରସିଲା, ତାକୁ କିଆଫୁଲ ପରି ବାସିଲା ।"

ତା' ଭଉଜା ଶ୍ରୀମତୀ ଗୋଟା 'ଲକ, ଆଉ ଗୋଟା ପୁଣି କେ ଲୋକ ?

ସେ ବର୍ତ୍ତମାନ ଏଗାରଟି ସନ୍ତାନର ଜନନୀ । ପୁଣି ଯଦି ବିବାହ ବଜାରରେ, ବିପତ୍ନୀକ ଗରାଖମାନଙ୍କ ଆଗରେ ସେ ନିଲାମ ଡକାଯାଏ

ତେବେ କ'ଣ ଅନନ୍ତା ଘରରେ ଚାଲି ନ ଯିବ ? ସେ କେତେବେ ସିନା କଲେଜ କୁଇନ ଥିଲା, ମଲ୍ଲୀ ଭଳି ଦୋହଲି ଦୋହଲି ଚାଲି, ଅନେକ ଟୋକାଙ୍କୁ ଟକଳା କରୁଥିଲା । ଏବେ ତ ସେ କୋଣାର୍କର ଦେବଦାସୀ ଭଙ୍ଗୀରେ ଚାଲିଗଲା ବେଳେ କ୍ୟାରମ ବୋର୍ଡ ଉପରେ ରାଣୀ ଚାଲିଗଲା ପରି ଦିଶେ । ରିଜେକ୍ଟେଡ଼ ଲଭରମାନଙ୍କ ଛାତିରୁ ଅଜାଣ ଖସେ । ଧୈର୍ଯ୍ୟ ଗୁମାନ ଟଳିଯାଏ, ସେ ଭଅଁର ଭଳି ଭଅଁ ଭଅଁ ନ ହୋଇ ମଇଁଷି ପଣ୍ଡା ପରି ଗଅଁ ଗଅଁ ହୁଅନ୍ତି ।

ବସନ୍ତ ଛିଂଚ୍ଛ ଦା'ଗ ସିନା ତା' ମୁହଁର ଶୋଭାକୁ ନଷ୍ଟ କରି ଦେଇଛି, ତା' ନ ହେଲେ ରମ୍ଭା ଗଛ ଭଳି ଉରୁ, କଜଳପାଣ୍ଟି ପରି ଭ୍ରୂଲତା, ଚତୁର୍ଭୁଜ ପରି ଉରଜ, ଭଗଜୁଟର ଚଉଲାଲ ପରି ବଳିଲା ବଳିଲା ମାଂସଳ ବାହୁ ଦିଶା ସତରେ ଭାରି ଲୋଭନୀୟ, ମଠ ମହନ୍ତଙ୍କ ପରି ମୋଟା ହେଲେ ବି ତା' ଦେହକୁ ସେ ମାନେ ।

ଉଭୟ ଗାଲରେ ଏକାଥରକେ ତିନିଗୋଟି ଗିଲା ପାନ ଗୁଞ୍ଜି, ଝୁଣ୍ଟିଆ ଝୁମ ଝୁମ କରି ଠିଆ ହୋଇଗଲେ ଯେମିତି ଦିଶେ, ଇଲେ ମୋ ଦାଣ୍ଡି, ମୁଁ ଯାଏ କୁଆଡେ ?

ଗଣେଶ ମାର୍କା ଖାଣ୍ଟି ସୋରିଷ ତେଲ ପରି ସବୁବେଳେ ଦିଶେ ତା'ର ପୋଟଳ ଚିରା ଆଖି ଦି'ଟା ।

କାରଣ ?

ସେ ବରାବର ରାଣୀ ଅନନ୍ତା ହୁଏ । କାଗର କାଳି ବସେ । ବିଲର ଧାନ ଫସଲ ପରି—ଏଗାର ବର୍ଷରେ ଲୁହ, ଲହୁ ଢାଳି ସେ – ଯେଉଁ ମଣିଷ ଫସଲ ଉପଜ କରିଛି ତାଙ୍କର ରକ୍ଷଣାବେକ୍ଷଣରେ ତା'ର ବଡ ପାଟେ ।

କାଉ କହେ "କା",

କୁକୁଡ଼ା ଡାକେ "ଚନ୍ଦ୍ରଧର ପାଣିକର" ।

ସଞ୍ଜ ଆସିଲେ କାଳ ଆସେ । ଛାତିରେ ଚାର ଛନକା ପଶେ । କଂସେଇ ଖାନାକୁ ନେଲା ପୂର୍ବରୁ ମିଆଁ ପୁଅ ଛେଳିଙ୍କି ଗଣିଲା ଭଳି, ବଧଶାଳାକୁ ଯିବା ପୂର୍ବରୁ ସେ ଏକ, ଦୁଇ, ତିନ କରି ପିଲମାନଙ୍କୁ ଗଣେ ।

ଜଣେ ଯଦି କହେ—"ବୋଉ, ମୋ' ପେଟ କାମୁଡୁଛି, ମୁଁ ଔଷଧ ଖାଇବ ।"

ଆଉ ଜଣେ କୁହେ—"ବୋଉଲୋ ମୋ' କାନ୍ଥୁ ଧକ ଧକ ହେଉଛି"।

ଆଉ ତେବେ କଏ ବିକଳ ହୋଇ କାନ୍ଦି କହେ—"ବୋଉମ, ମୋ' କାନରେ ଗୋଟାଏ କାନକୁଟୁଲି ପଶିଗଲା।"

ଶ୍ରୀମଣି ବିରକ୍ତ ହୋଇ କହେ—"ଇଏରେ ଟୁନା, ବୁନା, ମୁନା, ତୁମ ବାଇଚୁ ମରଯାନ୍ତ ହେଲେ। ଏତେ ଦୁଃଖ ତୁମର ଦେଖି ପାରନ୍ତି ନାହିଁ। ପିଲାମାନଙ୍କର ହାଉଗୁହାରି ଶୁଣୁ ଶୁଣୁ ରାତି ପାହେ। ସକାଳୁ ଉଠି ସେ ମେଘନାଦ ଉପରେ ଫାଁ ଦେଖାଏ। "ଘୁସୁଡ଼ି କୁଆପର ଫଲେ କୁଆ ଜନ୍ମ କରାଇ, ଗଧ ପରି ଶୋଇ ଆରାମରେ ଘୁଂଗୁଡି ମାରୁଛି ଆଉ ମୁଁ ରାତିସାରା ହଇରାଣ ହରକତ ହେଇ ହେଇ ମରୁଛି। ସେତେବେଳେ ସକ ସକ ଲାଗୁଛି, ଏତେବେଳେ ସମାନ୍ତୁନ ?"

ପିଲା ଯଦି କିଛି ଦୋଷ କରନ୍ତି ତେବେ ମେଘନାଦ ଉପରକୁ ବିପଦ ମାଡ଼ିଆସେ। ପିଲାଙ୍କ ଉପରେ ଯେବେ ମାଡ ବସେ, ମେଘନାଦ ଧରିବାକୁ ଗଲେ, ତା' ଉପରେ ବି ଦି' ପାହାର ହୋଇଯାଏ।

ମେଘନାଦ ଦି' ପାହାର ଖାଏ ପଛେ ଟୁଣ୍ଡ-ଦି'ଖଣ୍ଡ କରେନାହିଁ। ମେଘନାଦ ଶ୍ରୀମଣିଙ୍କି ଡରିବାର କାରଣ ହେଉଛି ସେ ତୃତୀୟ ପକ୍ଷ ସ୍ତ୍ରୀ।

ହେତେବେ—

ଶ୍ରୀମଣି ଲୋକଟା ମନ୍ଦ ନୁହେଁ, ଖାସା ଲୋକ। ଭଲ ମନ ଥିଲା-ବେଳେ ଗେହ୍ଲେଇ ହୋଇ ମେଘନାଦକୁ କହେ—

"ହଇହେ ମୁନା ବାପା, ମୁଁ ସିନା ରାଗ ଟାଗରେ ପଦେ କହିଦିଏ, ଗଛକୁ କ'ଣ ଫଳ ପିତା ଲାଗେ ?"

ମେଘନାଦ କହେ—"ଗଛ ଏବେ ଆଉ ଥରେ ପାଞ୍ଚଟି ଫଳ ଫଳୁ।"

ଶ୍ରୀମଣି ମୁରୁକ ମୁରୁକ ହସି କହେ—"ମଲା ତା' ଏବେ କଏ କ'ଣ ମନା କରିବ ?"

ଦୁଇରେ ମେଘନାଦ ଶ୍ୱଶୁର ଘରକୁ ଯିବାକୁ ଆଦୌ ମଙ୍ଗେନ। ସେ ଶଶୁର ଘରକୁ ନ ଯିବାର କାରଣ ଏହିକି ଯେ, ତା' ଫଉଲା ଶାଳୀ-ମାନଙ୍କର ମୁନଆଁ ଶ୍ଲେଷ ଖୁହାଣ୍ଡୀ ତା' ଦେହରେ ଫୋଡ଼ ହୋଇଯାଏ। ସେ ତାଙ୍କ ମୁହଁକୁ ଅନାଇଁ ପାରେନ।

ସାନ ଶଳାଭାଉଜକୁ ଦେଖିଲେ - ମେଘନାଦକୁ ଭାରି ଲାଜ ମାଡ଼େ । ମେଘନାଦ ଯେତେବେଳେ ବାହା ହେବାକୁ ଯାଇଥିଲା ସେତେବେଳେ ଏକ କୌତୁକାବହ ଘଟଣା ଘଟିଲା । ଶ୍ରୀମନ୍ତର ବାହାଘର ଓ ତା' ଭାଇର ବାହାଘର ଗୋଟାଏ ଦିନ ଆଗପଛ ହୋଇଥିଲା ।

ଆଗଦିନ ଭାଇର ବାହାଘର ସରିଥିଲା । ତା' ପରଦିନ ଭଉଣୀର ବାହାଘର ହେଲା । ବାହାଘର ସରିଲା ପରେ ମେଘନାଦକୁ ବାରିକ ଗାଧୋଇ ଦେଇ, ସାହି ଭିତରକୁ ନେଲା । ଯେଉଁ ଘରେ ସାନ ନୂଆବୋହୂ ଓଢ଼ଣା ଟାଣି ବସିଥିଲା, ସେଇ ଘରକୁ ମେଘନାଦକୁ ନିଆଗଲା । ମେଘନାଦ ସାନ ନୂଆବୋହୂକୁ—ଶ୍ରୀମନ୍ତ ବୋଲି ଭାବି ତା' ଜଙ୍ଘରେ ପୁଳାଏ ଚିମୁଟି ଦେଲା ।

ସାନ ନୂଆବୋହୂ ଘୁଞ୍ଚିଗଲା ।

ମେଘନାଦ କି ସହଜେ ଛାଡ଼ିବା ଲୋକ !

ସାନ ନୂଆବୋହୂ କାନ ପାଖରେ—ଫୁସୁ ଫୁସୁ କରି ଗୀତ ବୋଲିଲା—

"ବୋଲ ରାଧା ବୋଲ ସଙ୍ଗମ ହୋଗା କି ନେହିଁ ।"

ସାନ ନୂଆବୋହୂ ଓଢ଼ଣା ତଳୁ ନାସ୍ତି ସୂଚକ ମୁଣ୍ଡ ହଲାଇଲା । ମେଘନାଦ କହିଲା—"ଅଲବତ୍ ହୋଗା, ହୋଗା ।" ସାନ ନୂଆବୋହୂର ମୁଣ୍ଡରୁ ଓଢ଼ଣା ଟାଣିଦେଲା ମେଘନାଦ ।

ଏତିକିବେଳେ ଭାତ ଥାଳି ଧରି ଘର ଭିତରକୁ ପଶିଆସିଲେ ଶାଶୁ ।

ସାନ ନୂଆବୋହୂ ମୁଣ୍ଡରେ ପୁଣି ହାତେ ଲମ୍ବର ଓଢ଼ଣା ଟାଣି ଦେଇ ପାହାଡ଼ ମୂଷାଛୁଆ ପରି ଥରି ଉଠିଲା, ମେଘନାଦ ଲାଜରେ ଭାଙ୍ଗି ପଡ଼ିଲା । ଆଜି କି ସେ ଭାତ ଖାଏ ?

ଚତୁର୍ଥୀ ଦିନ ରାତିରେ ମେଘନାଦ ଶ୍ରୀମନ୍ତକୁ ଦେଖିଲା ମାତ୍ରେ କହିଲା—" ମୁଁ ତ ସେଦିନ ଯାହାକୁ ଦେଖିଥିଲି ତୁମେ ତ ସିଏ ନୁହଁ ।"

ଶ୍ରୀମନ୍ତ କହିଲା—"ସେ ପରା ସାନ ନୂଆଭାଉଜ ।"

ମେଘନାଦ କହିଲା—"ସର୍ବନାଶ ।"



# ଏ ବୟସ କ'ଣ ସୁହେଁ ?

"ଏ ବୟସ କ'ଣ ସୁହେଁ ?"

ଏହି ପ୍ରଶ୍ନଟି ବରାବର ମୋତେ ପଚାରନ୍ତି ଘରଣୀ ଚନ୍ଦ୍ରୀ ଦେବୀ ।

ମୁଁ କିଛି ଉତ୍ତର ଦେଇ ପାରେନା ।

ସେ ବାଘୁଣୀ ପରି ଗର୍ଜି, ନାଗୁଣୀ ପରି ଫଁ ଫଁ ହୋଇ କହନ୍ତି —"ତୁମେ ତ ନିହାତି ଗୋଟାଏ ବଦ ରସିକ । ଏ ଗୁରୁଙ୍କର ପାଠ ଜାଣିବ କୁଆଡ଼ୁ ? ତୁମରି ତ ମନ୍ଦ ଜଙ୍ଗଡ଼ା ଲେଉଟାଇବାକୁ କାଢ଼ ନାହିଁ, ତୁମେ ସଜ ସଜ ହୋଇ, ଆମ୍ଭୁଲ ଠାକୁର ଖାଇଲ ଭଳି ପାଟିରୁ ଲାଳ ଗଡ଼ାଇ, ପର ଝିଅକୁ ଆଣି ବେକରେ ବାନ୍ଧିଥିଲ କାହିଁକି ଶୁଣେ ? ଗୋଲାପ ଫୁଲ ସିନା ଲୋଭନୀୟ, ତା' ବୃନ୍ତତଳେ କଣ୍ଟକର ଜ୍ୱାଳା ଛପି ରହିଥାଏ ବୋଲି ତୁମେ କ'ଣ ଜାଣି ନଥିଲ ? ଛି...ଛି...ଛି...

ମୂଳରୁ ତୁମେ ପ୍ରେମର ସଂଜ୍ଞା ନ ଜାଣି, କୃଷ୍ଣ ସାଜି ରାଧା ଖୋଜି ଯାଉଥିଲ—କାହିଁକି ? ତୁମେ ପୁରୁଷ ହୋଇ ଯଦି ସ୍ତ୍ରୀର ମନକଥା ନ ଜାଣି ପାରୁଛ, ତେବେ ତୁମେ କି ପୁରୁଷ ? ସାହାଡ଼ା ଗଛକୁ ମିଶାଇ ଛ'ଟି ନବୀନା ଝିଅଙ୍କ ପାଣି ଗ୍ରହଣ କରିଛ—ରସିକତାର 'ର' ଅକ୍ଷର ଶିଖିନାହଁ ? ପ୍ରେମ ପାଣି କି ପଣା ଜାଣିନାହଁ ?

ହାଟରେ କ'ଣ ସିନ୍ଦୁର ନାହିଁ ?

ଅଭାଗିନୀ କପାଳରେ ନାହିଁ ।

ମୁଁ କାହାକୁ କହିବ ? ମୋର ତ ପୋଡ଼ା କପାଳ ।

ପ୍ରକୃତରେ—

ମୁଁ ଚନ୍ଦ୍ରୀ ଦେବୀଙ୍କୁ କିଛି ଉତ୍ତର ଦେଇପାରେନା । ସର୍କସର ଜୋକର ଭଳିପରି ମୁଁ ଖାଲି ବଲ ବଲ କରି ଅନାଏଁ । ମୁଁ ଆତ୍ମ ସମୀକ୍ଷା କରେ ।

ପୁଣି—

ମୋର କେଉଁଠି ତ୍ରୁଟି ରହୁଛି ? କାହିଁକି ଏ ଗୌର ଚନ୍ଦ୍ରକାର ଅବତାରଣା ?

ସପ୍ତମ ପକ୍ଷ ସ୍ତ୍ରୀ ବୋଲି ତ ହାତେ ମାପି ଗୃହଖଣ୍ଡେ ଗଢ଼ିଲ । ଝିଅଦାସ ଭଳି ମଜି ଜଗି ରହିଲେ । ପାନ ଭଙ୍ଗି ନେଇ ଖିଲ ଗାଲରେ ଗୁଞ୍ଜେ । ରାଣୀଙ୍କ ଦେହର ମହକଦାରିଆ ଫୁଲକୁ ତ ପଣତ କାନରେ ପୋଛେ । ଗ୍ରୀଷ୍ମ ହୋଇଲେ ବାସ ଚନ୍ଦନ ଲେପେ । ପିଲାଙ୍କ ପୁରୁଷ ତ ପୋଛେ । ଦୋଷ ମୋର ରହୁଛି କେଉଁଠି ?

ଏଇଥିା ଦୋଷ ହୋଇପାରେ, ମୁଁ ଦିନେ ଦିନେ ଗଧ ଖଟଣୀ ପରେ ଆସି ଚୁଡ଼ୁନ୍ଦ୍ରୀ ଦେବୀଙ୍କ ଆଗମନକୁ ଅପେକ୍ଷା ନ କରି ଆଗୁଆଁ ଶୋଇପଡ଼ି ଘୁଂଗୁଡ଼ି ମାରେ ।

ତଥାପି ତ—

ରକ୍ଷା ମିଳେ ନାହିଁ ।

ନବ ସଗଡ଼ ବଧୂସୀ, ଜହ୍ନି ମଂଜଠାରୁ ଗୋରୀ, କଂସତ ଛଅା ବଦନୀ, ଓ୍ୱାଉଗାଲ୍ ଚୁଡ଼ୁନ୍ଦ୍ରା ଦେବୀ ଝୁଣ୍ଟିଆ ଝମ୍ ଝମ୍ କରି ଆସି, ମୋ' ପାଖରେ ବସି, କାଖରେ ହାତ ପୁରାଇ କାଳିଆ ବଳଦ ଗଳାରେ ଗଳାରେ କହି କୁତୁକୁତୁ କରନ୍ତି ।

ହସ ନମାଡ଼ୁ ଥିଲେ ହସେ ।
ଇଚ୍ଛା ନ ଥିଲେ ଉଠି ବସେ ।

ତା'ପରେ—

ବେଟହଡ଼ା ଦାନ୍ତକୁ ଦେଖାଇ, ଗାରଣ ଖଣ୍ଡିଆ ଓଠକୁ ନେଫିଡ଼ି ଚାଉଳ ଭଳି ହସି ହସି ନିଜର ରୂପରେ ପ୍ରଶଂସା ଶୁଣିବାକୁ କହନ୍ତି—"ହଇହେ ଗନ୍ଧିଆ ବାପା"

ତୁମକୁ ମୋରାଣ, ସତ କହିଲ ମୁଁ କେମିତି ଦେଖା ଯାଉଛି, ନିଦ ମଳ ମଳ ଆଖିରେ ମୁଁ କହେ—

ଅପୂର୍ବ,
ଏକଦମ୍ ଅପୂର୍ବ,
ବନମାଳୀ ଥିଲେ ଏ ରୂପ ଦେଖି ଗାଇଥାନ୍ତେ,

"କି ଦେଖିଲି ଆଜ ନେତ୍ର ସଜନୀ, କି ଦେଖିଲି ଆଜ ନେତ୍ର
ଲଳିତ ମୂରତି କଳିତ ଲୁହଇ……।"

ଚନ୍ଦ୍ରିକା ଦେବୀଙ୍କ ସ୍ତୁତି କୁଣ୍ଟେ ମୋଟ ହୋଇଯାଏ । ଦୁନିଆଁରେ ନିଜର ପ୍ରଶଂସା ଶୁଣିବାକୁ କିଏ ଭଲ ନପାଏ ? ସେ ଉତ୍ଫୁଲ୍ଲ ହୋଇ କହନ୍ତି—

"ହଇହେ ଗନ୍ଧିଆ ବାପା, ତୁମେ ପରା ଜଣେ କୋବି, ଆଉ କ'ଣ କିଛି ଉପମା ଖଟୁ ନାହିଁ ?"

ମୁଁ କହେ—

ରସିକ କବି ଯଦୁମଣି ଥିଲେ ଗାଇଥାନ୍ତେ—

"ବସନ୍ତ ମୁହିଁକି ଉପମା ଖଟୁ,
କାମ କାକର ଛଣା ଜାଲି ଚଟୁ।"

ମୋର ଭଳି ଯେଉଁମାନେ ଷାଠିଏ ବର୍ଷରେ ସୁବଶ୍ୟ ସ୍ତ୍ରୀର ବୋଲକରା ହୋଇଥିବେ, ସେ ନିଶ୍ଚୟ ଅନୁଭବ କରୁଥିବେ ରମଣୀ ରାଣୀଙ୍କର ପ୍ରାଧାନ୍ୟ କେତେ ? ଅଗିଣିଆ କାଳୁଠାରୁ ସେମାନଙ୍କର ପ୍ରକୋପ ବି ବେଶି । ତାଙ୍କ ପ୍ରୀତି ସବୁବେଳେ ମରଣ ଖିଡ଼କି ଦେଉଥାଏ ।

ସେ ଶ୍ରେଷ୍ଠୀ ହୋଇଥିଲେ ତାକୁ ଶ୍ରୀମତୀ ବୋଲି କହିବାକୁ ହୁଏ । କାଣୀ ହୋଇଥିଲେ ପଦ୍ମଲୋଚନା ବୋଲିବାକୁ ହୁଏ । ନିହାତି ଅସୁନ୍ଦରୀ ହୋଇଥିଲେ ସୁନ୍ଦରୀ ଶିରୋମଣି ବୋଲି ଘୋଷଣା କରିବାକୁ ହୁଏ ।

କହିଲେ କୁଳ କୁଟୁମ୍ବକୁ ଲାଜ, ନ କହିଲେ କୁଳ ଭାସିଯାଉଛି । ଖଲିଆ ବଳଦକୁ ପାଞ୍ଚଣରେ ପିଟି କାମ ଉଠାଇଲା ଭଳି, ସେମାନେ ଗୁଞ୍ଜୁଣୀରେ ପିଟି ନିଜର ଉଦ୍ଦେଶ୍ୟ ସାଧନ କରନ୍ତି । ଚନ୍ଦ୍ରିକା ଦେବୀ ମଝିରେ ମଝିରେ ସେହି ଗୋଟିଏ ପ୍ରଶ୍ନ ପଚାରନ୍ତି—"ଏ ବୟସ କଣ ଦିଶେ ?"

ମୁଁ ଦେଖିଲି ଆଉ ଅନେକ ଦିନ ହେଲା ସେ ସେ ପ୍ରଶ୍ନ ଜମା ପଚାରୁ ନାହାନ୍ତି ।

ପୁଣି—

ଗନ୍ଧଆକୁ କ୍ଷୀର ଖୁଆଉ ନାହାନ୍ତି କି ପାଖରେ ଶୁଆଉ ନାହାନ୍ତି । ଗନ୍ଧଆ ବୋଉ ବୋଲି ଡାକିଲେ ସେ ଚିଡୁଛନ୍ତି । କାରଣ କ'ଣ ମୁଁ ଜାଣି ପାରୁ ନଥାଏ ।

କଥାଟି ଜଣା ପଡ଼ିଲା ସେଦିନ ।

ସେ ଯେଉଁଦିନ ମୋର ଝିଆରୀ କୁମାରୀ ପାଗଳକୁ ନେଇ ଗାର୍ଲ୍‌ସ କଲେଜ୍ ହଷ୍ଟେଲକୁ ଛାଡ଼ିବାକୁ ଗଲେ । ପିଲାମାନେ ସମସ୍ତେ ଏକା ସାଙ୍ଗରେ ଚିତ୍କାର ଛାଡ଼ି କହିଲେ—"ପୁରୁଷ – ପୁରୁଷ—ଲେଡ଼ିଜ୍ ହଷ୍ଟେଲରେ ଗୋଟାଏ ପୁରୁଷ ।" ଘଟଣାଚକ୍ରରେ ତାଙ୍କୁ ଡାକ୍ତରଖାନାକୁ ନିଆଗଲା । ସେତେବେଳକୁ ତାଙ୍କଠାରେ ପୂର୍ଣ୍ଣରୂପେ ପୁରୁଷତ୍ୱର ସବୁ ପ୍ରକାଶ ପାଇ ସାରି ଥିଲା ।

ମୁଁ ମନେ ମନେ ପ୍ରମାଦ ଗଣିଲି । ହଜେଇ ଦବ ଦବ, ପାଇ ଦବ ଦବ ହୋଇ ତାଙ୍କୁ ଚାହୁଁଥିଲି ।

"ଏ ବୟସ କ'ଣ ଗ୍ଭହେଁ ?



# ବାର ନୁହେଁ ନାରୀ ମନ

ମୁଁ ଆମ ବଗିଚାର ଗୋଟିଏ ଗୋଲାପ ଗଛ ପାଖରେ ବସି ହସୁଥିଲି ।

ମାନେ—

ଏକଦମ୍ ମନ ଖୋଲି ହସ ।

ଆମ ଶ୍ରୀମତୀ ଯାଇଁ କହିଲେ—

ଭୂତ ଲାଗିଛି ନା କଣମ ? କେହି କୁଆଡ଼େ ନାହାନ୍ତି, ତୁମେ ଏକୁଟିଆ ବସି, ମନକୁ ମନ ହସୁଛ କାହିଁକି ?

ମୁଁ କିଛି ଉତ୍ତର ନ ଦେଇ, ସିମ୍ବ ବୁଦା ଉପରେ ଏଣ୍ଡୁଅ ବସି ମୁଣ୍ଡ ଝୁଙ୍ଗାଇଲା ଭଳି ମୁଣ୍ଡ ଝୁଙ୍ଗାଇଲି ।

ଆମ ଶ୍ରୀମତୀ ଏଥର ଭାରି ଡରିଗଲେ ।

ସେ ଶାଢ଼ୀକାନି ଗୁଡ଼ି, ଖପରା ଡେଇଁ ଡେଇଁ, ଦଉଡ଼ି ପଳାଇଲା ବେଳେ କହି କହି ଯାଉଥିଲେ ।

"ଇଲୋ ମା' ରାଣୀ, ମୁଁ ଯାଏଁ କୁଆଡ଼େ ? ସ୍ୱାମୀଙ୍କୁ ନଷ୍ଟେ ଗୋଟେ ଭୂତ ଗ୍ରାସିଛି ।"

ମୁଁ ହସିଲି ।

ପୁଣି—

ଜୋରରେ ହସିଲି ।

ମୋ' ଖୁଡ଼ୁତା ପୁଅ ଭାଇ ତିଆରି କରିଥିବା ନୂଆ କୋଠାଟି ମୋ ହସର ଉତ୍ତର ଦେଇ ଠୋ' ଠୋ' ହସିଲା ।

ପ୍ରକୃତରେ—

ମଣିଷ ବେଳେ ବେଳେ ଏଭଳି ଏକ ଅଡୁଆ ପରିସ୍ଥିତିରେ ପଡ଼ିଯାଏ ଯେ ସେ କାହା ଆଗରେ କିଛି କହି ପାରେ ନା । ଅଖା

ଧୋଉଥାଏ, ଗୁଣ ଗାଉଥାଏ । ମୁହଁ ସବୁବେଳେ କପଟ ଅଲଣା ତର୍କାରି ଖାଇ, ଦୋଅଣି ହଜାଇଲା ଭଳି କରୁଥାଏ ।

ମୋ ସାନ ଭାଇ ମୋ' ଶାଳୀ ସଲ୍ଲାକୁ ବିଭା ହୋଇ ସେଇଠାରେ ଏକ ଅଡୁଆ ପରିସ୍ଥିତି ସୃଷ୍ଟି କରିଥିଲା । ମୋ ମନରେ ଅସରନ୍ତି ଭାବନାର ଏକ ଝଡ଼କୁ ଆଣି ବନ୍ଦୀ କରି ଦେଇଥିଲା, ସେ ଝଡ଼ ମୋ' ସୁଖର ମାଡ଼କୁ ଭାଙ୍ଗି ଦେଲା । ମମତାର ହାଡ଼କୁ ହାଣି ଦେଲା, ଶାନ୍ତିର ସ୍ୱପ୍ନକୁ ପୋଛି ଦେଲା ।

ପ୍ରକୃତରେ—

ନାରୀ, ନଦୀ ଦୁନିଆଁରେ କାଳେ କାଳେ ଅବୋଧ ଆଉ ଦୁର୍ବୋଧ । ଏ ଦୁହିଁଙ୍କର ଚରିତ୍ର ଯେ ବୁଝିବାକୁ ଚେଷ୍ଟା କରେ, ସେ ପାଗଳ ହୋଇଯାଏ । ବୁଢ଼ୀଆଣୀର ଅଡୁଆ ସୂତାକୁ ସଜାଡ଼ି ହୁଏ ପଛେ ଏମାନଙ୍କର ଚରିତ୍ରକୁ ବୁଝି ହୁଏନା ।

ଆମ ଘରଣୀ ସେଥିରୁ ବାଦ୍ ପଡ଼ନ୍ତେ କେମିତି ?

ଆମ ଘରଣୀ ଏଭଳି ଏକ ଫାଶ ବସାଇଦେଲେ ଯେ ମୋ ଭାଇ ବାଧ୍ୟ ହୋଇ ମୋ ଶାଳୀଙ୍କୁ ଜୀବନ-ସାଥୀ ରୂପେ ବାଛିଲେ ।

ଶାଳୀକି ମୋର ଖାଲି ଭଉଣୀଙ୍କ ଚେତି ଗୃହୁରୀ ନୁହେଁ, କବି ସୂର୍ଯ୍ୟଙ୍କ ଚନ୍ଦ୍ରକଳା ।

ଆଉ—

ସାମନ୍ତ ସିଂହାରଙ୍କ ବଉଣୀ କଣ୍ଠା ।

ଆମ ଘରଣୀଙ୍କ କାନକୁହା କଥା ଅନୁସାରେ ଭଲକରି ଜାଣିଥିଲି ସଲ୍ଲା ମୋର ଶାଳୀ । ତା ସଙ୍ଗରେ କେତେ ଥର ରଙ୍ଗ ରସରେ ମାତି କେଶ-କେଶରରେ କେଳୀ କଦମ୍ବ ଝୁଲାଇ ଥିବି ।

ମାତ୍ର—

ମୋ ଭାଇକୁ ବାହା ହେଲା ପରେ ମୁଁ ଜାଣିଲି ଯେ ସେ ମୋର ଜେଠଶାଶୁ ବୋଲି ।

ଦୁଇ ଭଉଣୀଙ୍କ କଳିରୁ ମୁଁ ଏ ତଥ୍ୟଟି ଆବିଷ୍କାର କଲି । ଦିନେ ଆମ ଘରଣୀ ସଲ୍ଲାକୁ କହିଲେ—

"ତୁ କ'ଣ ମୋ ମୁଣ୍ଡ ଲୁଣ୍ଠାଇବୁ ନା କ'ଣ ?" ତୋତେ ନିଶ୍ଚେ ମତେ ଅପା ଡାକ ଡାକିବାକୁ ହେବ । ତା ନ ହେଲେ ମୁଁ ମୋ ପ୍ରାଣେଶ୍ୱରଙ୍କ ନିକଟରେ ଅସତ୍ୟବାଦିନୀ ବୋଲାଇବ ।"

ସଲିଳା ଉତ୍ତର ଦେଲ—

"ଲୀଳା, ତୁ ଗୋଟାଏ କେମିତିକା ।"—

ଅନ୍ୟାୟ କଥା କହୁଚୁ ? ମୁଁ ବଡ଼ ଭଉଣୀଟା । ତୋତେ କେମିତି ଅପା ଡାକିବି କହିଲୁ ? ତୋର ବୁଦ୍ଧିରେ ପଡ଼ି ଭଉଣୀ ଜୋଇଁଟାକୁ ତ ଧନା କେତେ ଭଣେଇ କରି ହାସ ପରିହାସରେ ମାତିଲି ।

ପୁଣି —

ଦେଢ଼ଶୁରଟାକୁ ଭଣେଇ କରାଇବା ପାଇଁ ବସିଚୁ ?—

ମୁଁ ମରିବି ପଛେ ତୋତେ ଆଉ ଅପା ଡାକ ପାରିବି ନାହିଁ । ମୁଁ ଶୁଣି ଶୁଣି ହସିଲି—

ହଇହେ, କୁଆଡ଼େ ଗଲ, ଇଆଡ଼େ ଆସ ।

ତୁମ ଘର ଖୁବ୍ଲୁ ମୋର ଦୁଃଖ ଜୁହାର । ତୁମେ ଅଡ଼ୁଆ ଭିତରେ ମୁସ୍କିଲରେ ମୋତେ ପକାଇ ଦେଲ ।

ମୋ କଥା ଶୁଣି ଶ୍ରୀମତୀ ହସି ପାରୁ ନ ଥିଲେ କି କାନ୍ଦିପାରୁ ନ ଥିଲେ ।

ମୁଁ ହସିଲି,

ମାନେ—

ପୁଣି ଏକଦମ୍ ମନଖୋଲା ହସ । ଅଜାଣତରେ କଣ୍ଠରେ ବାଜି ଉଠିଲା ପଦଏ ଗୀତ—"ବାରି ଲୁହେଁ ନାଥ ମନରେ ସଙ୍ଗୀତ ।"



# ଗୃଧା ବାବୁ

ଚନ୍ଦ୍ରମୋହନ ବାବୁଙ୍କୁ ତାଙ୍କ ଅଫିସ୍‌ରେ ସମସ୍ତେ ଡାକନ୍ତି 'ଗୃଧା ବାବୁ'।

ଗୃଧା ବାବୁଙ୍କ କଥାରେ ଗୋଟାଏ ଓଜନ ଥାଏ।

ସେ ଶୁଖିଲା କାଠରୁ ପାଣି ବାହାର କରି ଦିଅନ୍ତି।

ସେ ତାଙ୍କ ଭାଗ୍ୟ ସାଙ୍ଗରେ ଲଢ଼ି ଲଢ଼ି ବଡ଼ ବାବୁ ହୋଇଛନ୍ତି। କୂଟ ବୁଦ୍ଧି ବଳରେ।

ଉପରସ୍ଥ ହାକିମମାନଙ୍କର ମନ ନେଇ, ହାକିମ-ଘରଣୀ ପାଆନ୍ତାଣୀ ମାନଙ୍କର ହୁକୁମ ତାମିଲ କରି, ତଳୁ ଉପରକୁ ଉଠିଛନ୍ତି।

ସେ ବଡ଼ ହାକିମମାନଙ୍କୁ ଏପରି ହାତ ମୁଠାରେ ରଖନ୍ତି ଯେ-ହିନେ କେହି ବିରକ୍ତ ହୋଇ ଫାଇଲ୍ ଫୋପାଡ଼ ନାହାନ୍ତି। ଅପଦାର୍ଥ ବୋଲି କହିନାହାନ୍ତି।

ଅକାଳ କୁଷ୍ମାଣ୍ଡ ବୋଲି ମନ୍ତବ୍ୟ କରିନାହାନ୍ତି।

ମୋଟ ଉପରେ, ସେ କେବେ କାହାର ବିରାଗଭାଜନ ହୋଇନାହାନ୍ତି।

ସେ ସବୁବେଳେ ବାହା ବାହା ପଦ ଶୁଣି ଉଜାଣି-ଯମୁନା ପାରି ହୋଇଛନ୍ତି।

ଲୋକଙ୍କୁ ବଶ କରିବାର କୌଶଳ ତାଙ୍କର ସ୍ୱତନ୍ତ୍ର।

ସେ ଚପରାଶିରୁ ବଡ଼ ବାବୁ ହୋଇଛନ୍ତି।

ସେ ଅବକାରୀ ବିଭାଗରେ କାମ କରୁଥିଲାବେଳେ ହାକିମଙ୍କ ବାପାଙ୍କୁ ଭଲ କଳି ଗଞ୍ଜେଇ ଯୋଗାଇ ଗୋଟିଏ ପାହାଚ ପ୍ରମୋସନ୍ ପାଇଥିଲେ।

ଖାଲି,

ଗଞ୍ଜେଇର ଯୋଗାଡ଼ ନଥିଲେ ।

ତାଙ୍କ ସାଙ୍ଗରେ "ବଂ ବଂ ଭୋଳା କନ୍ଥ" ଚାଲମରେ ଯୋଠ ମାରୁଥିଲେ ମଧ୍ୟ । ଦେଶୀ ମଦ ପିଇ, ହାକମଙ୍କ ବାପାଙ୍କ ସାଙ୍ଗରେ ଉଲଗ୍ନ ହୋଇ ହାଣ୍ଡି ମଝିରେ ଗଡ଼ୁଥିଲେ ବି ।

ଅବକାଶ ବିଭାଗରୁ ଗ୍ରାମଗୋଷ୍ଠୀ ବିଭାଗକୁ ବଦଳି ହେଲାପରେ ଗୃନ୍ଦା ବାବୁ ଆହୁରି ହାତ ସଫେଇ ଦେଖାଇଲେ । ଗାନ୍ଧିଙ୍କ ହାଣ୍ଡି ଆଣିଲେ । ଗୁଣ୍ଡ ଦୁଧ, ଅଣ୍ଡା, ସାର ଶ୍ରେଣୀ କାରବାର କରି, ହାକିମାଣୀଙ୍କ ଭାଗ ଦେଇ, ବଡ଼ ବାବୁ ହେଲେ ।

ତା'ପରେ............

ମଫସଲର ଏକ ବ୍ଲକ୍ ଅଫିସର 'ବଡ଼ ବାବୁ' ହୋଇଗଲେ । ବ୍ଲକ୍ ଅଫିସରେ ବ୍ଲାକ-ଜାଲ ଅର୍ଥାତ ଦୁର୍ନୀତିର ଜାଲ ମେଲିଦେଇ, ସେ କେନ୍ଦ୍ର-ବିନ୍ଦୁରେ ରହିଲେ ।

ତଳଆ କର୍ମୀମାନଙ୍କଠାରୁ ହାକିମଙ୍କ ଯାଏ ସମସ୍ତେ ଧରାପଡ଼ିଲେ ସେହି ଜାଲରେ ।

ଗୃନ୍ଦାବାବୁ ଏକାଦଶୀ ବକର ଭୂମିକା ଗ୍ରହଣ କଲେ ।

ଗ୍ରାମ ସେବିକା ।

ଗ୍ରାମ ସେବିକା ବୋଇଲେ ଗ୍ରାମେ ସେ ବିକା । ସମସ୍ତଙ୍କର ସେ । ସେ ଭୁଲ ଭଟକା କଲେ ଉଦ୍ଧାରିବ କିଏ ?

ଅଫିସର ମଥା-ମଣି ଗୃନ୍ଦା ବାବୁ ବିନା !

ତେଣୁ-

ଗ୍ରାମ ସେବିକା ବିଶେଷ ଗୃନ୍ଦାବାବୁଙ୍କ ତୃପ୍ତି ବିଧାନ ନିମନ୍ତେ ଅଣ୍ଡା ଯୋଗାଇବାଠାରୁ ଅଣ୍ଡା ଦେବାଯାଏ ସବୁକାର୍ଯ୍ୟ ସୁଚାରୁରୂପେ ତୁଲାନ୍ତି ।

ଗ୍ରାମ ସେବକ ।

ଗ୍ରାମେ ସେ ଏକାଦଶୀ ବକ ।

ଜନସାଧାରଣଙ୍କୁ ସାର ନ ଦେଇ, ସାର ଦେଇଛୁ ବୋଲି ଷ୍ଟକ୍ ରେଜିଷ୍ଟରରେ ଦରଜ କରନ୍ତି । ଘର ଭିତରେ ରହି ପଦାରେ ଖବର ପକାଇ, ଟୁର୍ରେ ଯାଇଥିବାର ସଙ୍କେତ ଦିଅନ୍ତି ।

ଗୃନ୍ଦାବାବୁଙ୍କୁ କିଛି ମାଲପାଣି ଦେଇ, ଛୁଟିରେ ଛେପ ପକାଇ ନିଦିଙ୍କ ଦୁଅନ୍ତି ।

ଗୃନ୍ଦା-ବାବୁଙ୍କୁ ସୁଖ ।

ଗ୍ରାମ ସେବକଙ୍କୁ ସୁଖ ।

ବେଣାରୁ ମୋଟ, ଘାସରୁ ଶ୍ରେଷ୍ଠ, ସଂପ୍ରସାରଣ ଅଫିସରମାନେ ଗ୍ରାମସେବକ ଓ ଗ୍ରାମସେବିକା ମାନଙ୍କର ବାଟଧରି, ବଡ଼ ବାବୁଙ୍କ ପକେଟରେ କେତୋଟି ମୁଦ୍ରା ରଖି ଦେଇ, ଘରକୁ ବାହୁଡ଼ିଯାନ୍ତି ।

ଗୃନ୍ଦା-ବାବୁ ସେମାନଙ୍କୁ ଘଣ୍ଟା ଘୋଡ଼ାଇ ରଖନ୍ତି ।

ଅଫିସ୍‌ର ତଳିଆ କିରାଣୀମାନେ ବି ଗୃନ୍ଦାବାବୁଙ୍କ ଖାପଚରେ ଥାନ୍ତି । କିରାଣୀମାନେ ମାସ ଶେଷରେ ଦରମା ନେଲା ଦିନ, ଅନ୍ତରରେ କାନ୍ଦି, ଉପରେ ହସି, ବଡ଼ ବାବୁଙ୍କ ଉଦ୍ଦେଶ୍ୟରେ କିଛି ଅର୍ଥ ଉତ୍ସର୍ଗ କରନ୍ତି ।

ଦର୍ଶନୀ ନ ଥୋଇ ଦଣ୍ଡବତ ହେଲେ, ବଡ଼ବାବୁ ସାଙ୍ଗେ ସାଙ୍ଗେ ରାଧାନାଥ ଗ୍ରନ୍ଥାବଳୀରୁ ଉଦାହରଣ ଦେଇ କହନ୍ତି—

"ସଲ୍ଲିଳ ନ ସିଂଚି ଖାଲି ଦଣ୍ଡବତ
କରିବାକୁଛନ୍ତି ଲୋକ ଶତ ଶତ ।"

ଖୋଦ୍ ହାକିମ ବି ଗୃନ୍ଦା-ବାବୁଙ୍କ ଫାଶରେ ପଡ଼ନ୍ତି । ବିଭାଗୀୟ ଉପରସ୍ଥ ଅଫିସରମାନଙ୍କର ପରିଚର୍ଯ୍ୟାର ଭାର ଗୃନ୍ଦା-ବାବୁଙ୍କ ଉପରେ ଦିଅନ୍ତି । ବଡ଼ବାବୁ ଛ'ସ୍ଥାନରେ ନ'କରି, ରୋଜନାମଚା ଲେଖି, ବେଶ୍ ଦି'ପଇସା ପା'ନ୍ତି ।

ହାକିମଙ୍କ ହାକିମ,

ତାଙ୍କ ତେଯ୍ଯାଳିଶ ପୁରୁଷ ମଧ୍ୟ ଗୃନ୍ଦା ବାବୁଙ୍କୁ ଧରି ପାରନ୍ତି ନାହିଁ । ଜୋକ ମୁହଁରେ ଲୁଣ ଦେଲା ପରି ରହନ୍ତି ।

ଦିନକର କଥା ।

ଗୃନ୍ଦା-ବାବୁ ଧାନ ଉଁଷା ହାଣ୍ଡି ପରି ମୁହଁ କରି, ବହୁତ ରାତିରେ ଘରକୁ ଫେରିଲେ । ଶଯ୍ୟା-ସଙ୍ଗିନୀ ଘରଣୀ ପଥ ଚାହିଁ ଚାହିଁ ନଥିାନ୍ତି । ସେ ଗୃନ୍ଦା ବାବୁଙ୍କୁ ଦେଖି ଦେଖି କହିଲେ—

"ହଇ ହେ ହଗୁରି ବାପା, ତୁମେ ଏକା ଗୃକିରୀ କରିଛନା ଆଉ କିଏ ଗୃକିରୀ କରିଛୁନ ? ରାତି ଆସି ଦି'ଟା ବାଜିଲାଣି, ତୁମେ ଅଫିସରୁ

ଆସୁଛ ? ଅନ୍ୟମାନେ କ'ଣ ସମସ୍ତେ ଏତେ ବେଳଯାଏ ଅଫିସ୍‌ରେ ଥିଲେ ?"

ଗୁନ୍ଦା ବାବୁ ପ୍ରିୟତମାଙ୍କୁ ସ୍ବଭାବ-ସୁଲଭ-ସ୍ନେହ-ଜଡ଼ିତ ଗଳାରେ କହିଲେ—

"ହେଉ, ହେଉ ଭାତ ଆଣ ।

ଗୁଣ୍ଡାଏ ଅପଦାର୍ଥ, ଦଳେ ଅକାଳ କୁଷ୍ମାଣ୍ଡ, ପଞ୍ଝାଏ ରାଣ୍ଡୀପୁଅ ଅନନ୍ତା, ଠକଲା ଟୋକାଙ୍କ ଯୋଗୁଁ ମୁଁ ଏ ଦଶା ଭୋଗୁଛି ।".

ଘରଣୀ ପଚାରିଲେ—"କିଏମ ସେ ଗୁଣ୍ଡା ?"

ଗୁନ୍ଦା ବାବୁ କହିଲେ –

"ହଇ ହେ, କୁହନା କୁହନା, ଆମ ଅଫିସ୍‌ର ସେ ରାଉତ ବାବୁ, ସାହୁ ବାବୁ, ଜେନା ବାବୁ ଗୁଣ୍ଡାକ ଏମିତି ଠକଲା ? ପ୍ରତି ଶନିବାର ଦିନ ଘରକୁ ସେମାନେ ନଗଲେ ରକ୍ଷା ନାହିଁ ।

ଗଲାତ ଗଲ, ଠିକ୍ ସମୟରେ ଆସନ୍ତ ହେଲେ ?

ସୋମବାର ଦିନ ଅଫିସରେ ପହଞ୍ଚୁ ପହଞ୍ଚୁ କା'ର ଦିନ ବାରଟା ତ କା'ର ଦିନ ଗୋଟାଏ । ଆଉ ଅଫିସ୍‌ର କାମ ହେବ କ'ଣ ?

ହାତେ ହାତେ ପଇସା ନେଉଛନ୍ତି, ଏମାନଙ୍କୁ ଧର୍ମ ସହୁଛି କେମିତି ? ଅଫିସ୍‌ରେ ପହଞ୍ଚିଲା ବେଳକୁ ଦେଖିବ ସମସ୍ତଙ୍କ ଆଖି ନାଲି, ନାଲି । ଖୋଳା ଖୋଳା । ପୋଷେ ଲେଖା ଗୁଡ଼ିଲ ଧରିବ ।"

ଘରଣୀ ରସିକତା କରି ପଚାରନ୍ତି– "କ'ଣ ନୂଆ ବାହା ହୋଇଛନ୍ତି କି ?"

ଗୁନ୍ଦା ବାବୁ କହନ୍ତି—"ଆଉ ବେଗ କେଉଁଠିକି ? ଏଣୀଥରେ ସମସ୍ତଙ୍କୁ ତଲବ ଦେଲି । ଗଲା ସାତଲେ ସମସ୍ତେ ବାହା ହୋଇଛନ୍ତି ପରା !"

ଘରଣୀ କହନ୍ତି –"ସେ କଥା କହୁନା ?"

ହୁଁ...

ତୁମେତ ଦିନେ ନଫେରି କେମିତି ବାଉଳା ହେଉଥିଲ ? ଯେତେ ମନାକଲେ, ନିଷିଦ୍ଧ ଦିନ ମାନଙ୍କରେ ବି ଆସି, ଘରେ ହାଜର ହୋଇ, ଅଟ୍ଟହାସ କରୁଥିଲ ?

❋

ବୃନ୍ଦା ବାବୁ କହିଲେ—"ଆଜ ସୁଅଙ୍କର ପ୍ରେମ ମୁଁ ବାହାର କରି ଦେଇଛି ଯେ ! ପୁଅ ଏକା ଥରକେ ଘରେ ଯାଇଁ ପ୍ରେମ କରୁଥିବେ ।

ଆଉ—

ଆସିବେ କାହିଁକି, ଯିବେ କାହିଁକି ?

ଆଉ ଧନକର କଥା ।

ବୃନ୍ଦା ବାବୁ କାର୍ଯ୍ୟୋପଲକ୍ଷରେ ପୁରୀ ଯାଇଥାନ୍ତି । ଗଉଡ ବାବୁଙ୍କ ସ୍ତ୍ରୀ କୁମୁଦମା ଆସି ବୃନ୍ଦା ବାବୁଙ୍କ ଘରଣୀଙ୍କି ଏକ ଲମ୍ବା ଚୌଡ଼ା ଦଣ୍ଡବତ ପକାଇଲା ।

ଘରଣୀ ଚମକି ପଡ଼ି ପଚାରିଲେ—

"ଆଲେ କୁମ, ତୁ' କୁଆଡ଼େମ ?"

କୁମୁଦମା ପଚାରିଲା—"ତୁ' କଣ କହୁ ଜାଣିନୁ ଅପା ?"

ଘରଣୀ କହିଲେ—"ଇଲେ ମୋ' ଦେହ ଥରିଲାଣି,

କାର କ'ଣ ହୋଇଛିବା ?"

କୁମୁଦମା କହିଲା—"ତୋ' ଭଉଣୀ-ଜୋଇଁଙ୍କର ଚାକରୀ ପରା ଚନ୍ଦ୍ର ଭାଇଙ୍କ ଯୋଗୁଁ ଯାଉଛି ?"

ଘରଣୀ ଗୁଣ୍ଡିରେ ତିନ ନଣ୍ଡା ଛେପ ଢକାଇ କହିଲେ—"ଓଃ ଏଇ କଥାତ ।"

ଆଉ ଟିକଏ ପରେ...

ସାହୁ ବାବୁଙ୍କ ସ୍ତ୍ରୀ ଆରଖି ପହଞ୍ଚିଲା । ଦଶ ବର୍ଷ ହେଲା ବାହା ହେଲାଣି । ଗଛରେ କଷି ଧରୁନ ।

ତାକୁ ଦେଖୁ ଦେଖୁ ଘରଣୀ କହିଲେ—"ଇଲେ ଆରଖି, ତୁ କୁଆଡ଼େ ?"

ଆରଖି ନାକ ସୁଁ ସୁଁ କରି କହିଲା—

"ମାଉସୀ ତୁ ଫେରେ ଥାଉଁ ଥାଉଁ—ଚନ୍ଦ୍ର ମଉସାଙ୍କ ଯୋଗୁଁ ସ୍ବାଙ୍କର ଚାକରୀ ଯିବ ?" ଘରଣୀ ପଚାରିଲେ—"ଇଲେ ଘଟଣା କ'ଣ ?

ଆରଖି କହିଲା—"ଚନ୍ଦ୍ର ମଉସା ସ୍ବା'ଙ୍କୁ କ'ଣ—

ଦିନେ ଖାଣ୍ଟି ଗୁଆ ଘିଅ ସେରେ ମାଗିଲେ । ଏ ନଦେଲେ ବୋଲି ନାନା ଆଳ ଦେଖାଇ ସ୍ବା'ଙ୍କୁ ଚାକରୀରୁ ବାହାର କରିଦେବା ପାଇଁ ନୋଟିସ୍ ଦେଇଛନ୍ତି ।

ଆରତ୍ତି କଥା ସର ନାହିଁ, ଜେନା ବାବୁଙ୍କ ସ୍ତ୍ରୀ ଦେବକୀ ଆସି ପହଞ୍ଚିଲା ।

ତାକୁ ଦେଖୁ ଦେଖୁ ଘରଣୀ କହିଲେ—"ଇଲୋ ତୋ' ଗୋଡ଼ରୁ ଅଳତା ଛାଡ଼ିନାହିଁ,

ତୁ' କୁଆଡ଼େ ?"

ଦେବକୀ କହିଲା—"ତୁ' ଥାଉଁ ଥାଉଁ ଅପା, ଚନ୍ଦ୍ର ପିଇସା ପ୍ୟା'ଙ୍କୁ ପୁଣି ଏମିତି ଅଡୁଆରେ ପକାଇ ହଟ ସାଧିଲେ ।"

ସମସ୍ତଙ୍କର ସମାନ ଧରଣର ଅଭିଯୋଗ ।

ଘରଣୀ ଏଥର କହିଲେ—"ତୁମେ ସବୁ ଆଗେ ଖାଇବ ଆସ । ପରେ ସେ କଥା ବୁଝାଯିବ ।

ସମସ୍ତେ ଖାଇ ବସିଛନ୍ତି । ବୃନ୍ଦାବାବୁ ଆସି ପହଞ୍ଚିଲେ । ଘରଣୀ ହଉଡ଼ଗଲେ । ବୃନ୍ଦା ବାବୁ ପଚାରିଲେ—

"ସେମାନେ କଏ ?"

ଘରଣୀ କହିଲେ—"ପରେ ଜାଣିବ ସେମାନେ କଏ ?

ଆଚ୍ଛା ! ଖାଇବ କ'ଣ ?"

ବୃନ୍ଦା ବାବୁ କହିଲେ—"ଭାତ ?"

ଘରଣୀ ଚୁପୁ ଚୁପୁ କରି କହିଲେ—"ଭାତ ନା ପାଉଁଶ ଖାଇବ ।" ତୁମକୁ ଆଜ ଯାଗା ମିଳିଲା ନାହିଁ । ମୋର ଭଉଣୀ, ମୋର ଝିଆରୀ, ସ୍ୱାମୀଙ୍କ ସାଙ୍ଗରେ ଖେଳୁଛ ?

ମୁଡ଼ି ମୁଆଁ ଦଟା ଆଣି ଘରଣୀ ଦେଲେ । ବୃନ୍ଦା ବାବୁ ଆରାମ ଚେୟାର ଉପରେ ବସି ଆଖି ବୁଜି ଢେଙ୍କାର ପାଣି ଢକ ଢକ କରି ପିଇ ଯାଉଥିଲେ । ଦେହରୁ ଶ୍ରମଝାଳ ବୋହିଯାଉଥିଲା ।

ପବତ ଗିଳା ମାଙ୍କଡ଼କୁ ମୁଡ଼ି ମୁଆଁ ।

କୁଆଡ଼କୁ ଯାଏ ?

ଆରତ୍ତି, ଦେବକୀ ପ୍ରଭୃତି ଆସି ନମସ୍କାର କଲେ । ବୃନ୍ଦାବାବୁ ଆଖି ବୁଜି ମୁରୁକି ହସାଦେଇ କହୁଥିଲେ, "ଆଚ୍ଛା ହେଉ, ତୁମମାନଙ୍କ କଥା ବୁଝିବା ।

# ଦୃଅଣପୁର ଆଉ
# ଡାକ୍ତର ଛୁଆନ ସିଂ ମହାପାତ୍ର

ଈଶ୍ୱରଙ୍କ ସୃଷ୍ଟି ଅଲଗା, ବିଶ୍ୱାମିତ୍ରଙ୍କ ସୃଷ୍ଟି ଅଲଗା ବୋଲି ସମସ୍ତେ କହନ୍ତି ।

ମାତ୍ର………

ଏତେ ଦିନକରେ ଏକଥା ହୃଦ୍‌ବୋଧ ହେଲା ଗଣ୍ଡି ଭୈରବ ବାବୁଙ୍କର । ସେ ପ୍ରତ୍ୟକ୍ଷ ପ୍ରମାଣ ପାଇଗଲେ ।

ସମସ୍ତେ ଜାଣନ୍ତି ।

ଈଶ୍ୱର ସୃଷ୍ଟି କଲେ ବର୍ଷା । ବିଶ୍ୱାମିତ୍ର ସୃଷ୍ଟି କଲେ କୁହୁଡ଼ି । ଈଶ୍ୱର ସୃଷ୍ଟି କଲେ ନାଗ । ବିଶ୍ୱାମିତ୍ର ସୃଷ୍ଟି କଲେ ମାଣ୍ଡଚିଆ । ଈଶ୍ୱର ଘୋଷଣା କଲେ—

"ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟାଃ

ବିଶ୍ୱାମିତ୍ର ଦି'ପାଦ ଆଗେଇ ଯାଇ ଘୋଷଣା କଲେ—

"ପୁତ୍ର ର୍ଥେ କ୍ରିୟତେ ଭାରଦାଃ" ।

ବିଶ୍ୱାମିତ୍ରଙ୍କ ଘୋଷଣା ବୋଧହୁଏ ସର୍ବ ପ୍ରଥମେ ଏବେ କାର୍ଯ୍ୟକାରୀ ହେଲା, ଛବିଳ ଉତ୍କଳରେ, ଭାରତର ଏକ ପୁରାତନ, ମହିମାମୟ, ଐତିହାସିକ କଟକ ନଗରୀରେ ।

ଦିନ ଦି' ପହରେ,

ବିବୁଧ ଜନମାନଙ୍କ ସମ୍ମୁଖରେ ।

ଭକ୍ତବୃନ୍ଦଙ୍କ ଆଖି ଆଗରେ ।

ଗୁରୁ ବିବାହ କଲେ ଶିଷ୍ୟଙ୍କୁ । ପୁରୁଷ ବିବାହ କଲେ ପୁରୁଷଙ୍କୁ । ଭାରତର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ଯାଏ ଯେ ଏକଥା ଶୁଣିଲା ସେ ସାବାସ୍ ଓଡ଼ିଶା ବୋଲି କହିଲା ।

କବର ଭିତରେ ଲୌହ ମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ କହିଲେ –"ମୁଁ ଥରେ ଗଡ଼ଜାତ ମିଶ୍ରଣ ବେଳେ କହିଥିଲି—"ସାବାସ୍ ଓଡ଼ିଶା" ଏବେ ପୁଣି କହୁଛି—

"ସାବାସ୍ ଓଡ଼ିଶା"।

ଆଦି କବି ସାରଳା ଦାସ ସ୍ୱର୍ଗରୁ ଖବର ପଠାଇଲେ ।

"ଭାଇମାନେ,

ମୁଁ ସବୁକଥା ଜାତୀୟ ଦୃଷ୍ଟିକୋଣରୁ ବିଚାର କରେ । ତା' ନ ହେଲେ ଶ୍ରୀକୃଷ୍ଣଙ୍କ ସମାଧି ମହୋଦଧି ତୀରରେ ଦେଇ ନ ଥାନ୍ତି । ଅର୍ଜ୍ଜୁନଙ୍କୁ ନେଇ ଏକାମ୍ର କାନନରେ ବିହାର କରାଇ ନ ଥାନ୍ତି । ଯୁଧିଷ୍ଠିରଙ୍କୁ ନେଇ ଯାଜପୁରରେ ହରି ସାହୁଙ୍କ କନ୍ୟା ସିଂହାଣି ସହିତ ବିବାହ କରାଇ ନ ଥାନ୍ତି ।

ମାତ୍ର –

ଏଭଳି ଏକ ଘଟଣା ଭବିଷ୍ୟତରେ ଘଟିବ ବୋଲି ମୁଁ କଳ୍ପନାରେ ସୁଦ୍ଧା ଭାବି ନ ଥିଲି । ମା' ସାରଳା ବି ମୋତେ କିଛି କହି ନ ଥିଲେ ।

ତେଣୁ –

ମୁଁ ମୋ ମହାଭାରତରେ ଏ ବିଷୟରେ କିଛି ଲେଖି ନାହିଁ । ଦୟାକରି ନବ ସଂସ୍କରଣ ମହାଭାରତରେ ଏ ବିଷୟଟି ଯୋଗ କରିଦେବେ ।"

ପୁରୁଷଙ୍କୁ ପୁରୁଷ ବିବାହ ଦେବା କଥା ଶୁଣି ଅନେକଙ୍କର ଚାଳେଣି ପଡ଼ିଲା । ବିଶେଷତଃ ମହିଳା କଲେଜ ହଷ୍ଟେଲମାନଙ୍କରେ, ସାରା ଭାରତରେ ବିଶୃଙ୍ଖଳା ଖେଳିଗଲା । ପ୍ରେମିକାମାନେ ଯେଉଁ ଯେଉଁ ବାଗରେ ଯେ ଯେଉଁଠି ଚକ୍ରବନ୍ଧ ହୋଇଥିଲେ, ସେମାନେ ଚୁକ୍ତିର ଖିଲାପ ଘଟି-ପାରେ ବୋଲି ମନରେ ଆଶଙ୍କାପୋଷଣ କଲେ ।

ଡାକ୍ତରମାନେ ପ୍ରମାଦ ଗଣିଲେ ।

ପରିବାର ନିୟନ୍ତ୍ରଣ ପାଇଁ, ନାରୀମାନଙ୍କ ଲାଗି ସିନା ଲୁପ୍ ଉଦ୍ଭାବନ କରାଗଲା, ପୁରୁଷଙ୍କ ପାଇଁ ପୁଣି କ'ଣ କରାଯିବ ?

କେହି କେହି ବି ତୂରୀ ବାଇଦ ବଜାଇ କହିଲେ,

"ସତ୍ୟ ଯୁଗ ଆରମ୍ଭ ହେଲା, ।

କଳିଯୁଗ ଶେଷ ହେଲା, ।"

କଳ୍କି ଅବତାର ଏଥର; ତେର ହାତ ଖଣ୍ଡାଧରି ବାହାରିବେ । ଜଗନ୍ନାଥ ଆଉ ବଡ଼ ଦେଉଳରେ ରହିବେ ନାହିଁ । ଛତିଆ ବଟକୁ ଚାଲିଯିବେ । ମ୍ଲେଚ୍ଛମାନେ ସଂହାର ହେବେ । ସାଧୁ ସନ୍ଥମାନେ ଖାଲି କୁଳକୁ ବହନ ହେବେ ।

ବହି ବାହାରି ଗଲା—"ଅଣ୍ଡିରି ସହିତ ଅଣ୍ଡିରିର ବିବାହ ।"

ଗଣ୍ଡ ଭୈରବ ବାବୁଙ୍କ ତୃତୀୟ ପକ୍ଷର ସ୍ତ୍ରୀ ଶ୍ରୀମତୀ ବାଘୁଣୀ ଦେବୀ, ଖଣ୍ଡିଏ ଅଣ୍ଡିରି ବିବାହ ବହି କିଣି, ହସି ହସି ରସିକତା କରି ସ୍ୱାମୀଙ୍କୁ କହିଲେ—

"ହଇହେ ଗାଣ୍ଡୁଆ ବାପା,
ତୁମେ ଏଥର ଗୋଟିଏ ଅଣ୍ଡିରିକୁ ବିବାହ କର ।"

ଗଣ୍ଡ ଭୈରବ ବାବୁ କ ସହଜରେ ଛାଡ଼ିବା ବ୍ୟକ୍ତି ? ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ;—

"ନାରୀ ଯଦି ନାରୀ ସହିତ ମିଶି ଅଷ୍ଟାବକ୍ର ଋଷିଙ୍କୁ ଜନ୍ମ ଦେଇ ପାରେ,

ତେବେ—
ପୁରୁଷ ପୁରୁଷଙ୍କୁ ବିବାହ କରିବାରେ କ୍ଷତି କ'ଣ ?"
ତୁନି ପଡ଼ିଲେ ଶ୍ରୀମତୀ ବାଘୁଣୀ ଦେବୀ ।
କିଛିକ୍ଷଣ ପରେ,
ମୁହଁକୁ ଧାନ ଉଷୁନା ହାଣ୍ଡି ପରି ଫଣ ଫଣ କରି କହିଲେ—

"ମଲା ମୋର, ମୁଁ କେଉଁଠି ପଚାରେ କ'ଣ କହୁଁ କହୁଁ ତମେ ସାପପରି ଏମିତି ଫଅଁ ଫଅଁ ହେଲଣି କଣ ମ ? ମୋ କଥା ମିଛ ?

ନଈ ପୁଣି ଦି' କୂଳ ଖାଇଲେ ବି କୁକୁର ଯେମିତି ଜଉରେ ଚାଟି ଚାଟି କରି ପାଣି ପିଏ, ପୁରୁଷ ଜାତିର ସ୍ୱଭାବ ସେଇମିତି ।"

ଗଣ୍ଡ ଭୈରବ ବାବୁ ଆଉ ସ୍ତ୍ରୀଙ୍କ କଥାରେ ପ୍ରତିବାଦ କଲେ ନାହିଁ । କାରଣ ତୃତୀୟ ପକ୍ଷ ସ୍ତ୍ରୀ । ହାଜରୀରୁ ନାମ କାଟି, ପଡ଼ିକାଠ ହୋଇ ଯାଇପାରେ ।

ତେଣୁ—
ସେ ନିଜ କଥାର ଢଙ୍ଗ ବଦଳାଇ, କଅଁଳେଇ କହିଲେ,

"ହଇଚନ୍ଦେ ଗାଣ୍ଡୁଆ ବୋଉ, ଜଣେ ପୁରୁଷ ଆଉ ଜଣେ ପୁରୁଷକୁ ବିବାହ କରିଛି ବୋଲି ତମେ କହୁଛ, ଆମ ଦେଶରେ ଏମିତି ଲୋକ ଅଛନ୍ତି ଯେ ନିଜକୁ ନିଜେ ବିବାହ କରୁଛନ୍ତି।"

ଶ୍ରୀମଣି ବାଘୁଣୀ ବେଖି ପଚ୍ଛରିଲେ—

"ତୁମର ଏ ଗୋଟା ଖାଲି କହିବାର ଗୃତୁଷି, ନିଜକୁ ନିଜେ ପୁଣି ଗୋଟାଏ କିଏ କେମିତି ବାହାହୁଏ ?"

ଗଣ୍ଡ ଭୈରବ ବାବୁ ଏଥର କହିଲେ,

"ତେବେ ଶୁଣ।"

ଭୁଅଣପୁର ବୋଲି ଗୋଟିଏ ଗାଆଁରେ ଏମିତି ଘଟିଛି। ସେ ଗାଆଁର ଭୁଲିମନ ଜୁଆଲ ସିଂ ମହାପାତ୍ର ଜଣେ ବଡ଼ ଲେଖକ। ତାଙ୍କ ପାହୁଣ୍ଡକୁ ପଚଶ ଦଣ୍ଡବତ ମିଳେ। ମାସିକ ପତ୍ରିକାଠାରୁ ଦୈନିକ ପତ୍ରିକା ଯାଏ ଯେଉଁଥିରେ ଦେଖ, ସେଥିରେ ତାଙ୍କ ଲେଖା ବାହାରେ।

ଲେଖା,

ଲେଖା ବୋଇଲେ ଗ୍ରେଖା ଲେଖା।

ଅତ୍ୟାଧୁନିକତାର ଢଙ୍ଗରେ ଲେଖାଗୁଡ଼ିକ ତାଙ୍କର ପଳାଶ ଫୁଲ ପରି ରଙ୍ଗୀନ୍। ତାଙ୍କ ଲେଖାକୁ ପ୍ରାୟ ସମସ୍ତେ ବୁଝି ପାରନ୍ତି।

ସେ ନିଜେ ଯେପରି ପବନା, ତାଙ୍କ ଲେଖାଗୁଡ଼ିକ ସେହିପରି ଘରଚଟିଆ ଚଢ଼େଇର ପରପରି ହାଲୁକା।

ସବୁ ଗୁଡ଼ିକ ଲେଖା ତାଙ୍କର।

'କ୍ଷୁ'

'କ୍ଷୁଂ'

କେବଳ ବୟସ୍କଙ୍କ ପାଇଁ।

କଣା ଭୁଆସୁଣୀଙ୍କ ପାଇଁ ଇତ୍ୟାଦି, ଇତ୍ୟାଦି।

ଓଡ଼ିଶାରେ କେବଳ ତାଙ୍କର ଲେଖାର କାଟତି ବେଶି।

କାରଣ—

'କ୍ଷୁ' 'କ୍ଷୁଂ' ମାନେ ତାଙ୍କ ଲେଖା ବେଶୀ କିଣନ୍ତି। 'କ୍ଷୁ' 'କ୍ଷୁଂ'ର ଅର୍ଥ ବୁଝି ପାରୁଛ ତ ? ପତ୍ରିକାରେ ପ୍ରକାଶିତ—

ପ୍ରତି ଲେଖାର ଶୀର୍ଷକ ତଳକୁ ସେ ଲେଖିଥାନ୍ତି।

"ବନ୍ଧୁ ସଙ୍ଗମ ବହିବାରକୁ"

"ବନ୍ଧୁ ଭଗ୍ନ-ମନୋରଥ ମହାନ୍ତିଙ୍କୁ"
"ଅଧ୍ୟାପକ ବନ୍ଧୁ ଛତ୍ରପଠାଙ୍ଗ ଶ୍ରେହାନଙ୍କୁ"
"ସୁଶ୍ରୀ, ବାନ୍ଧବୀ ପୀନ ପୟୋଧର ମିଶ୍ରଙ୍କୁ ।"

ତେଣୁ—

'କୁ' 'ଙ୍କୁ' ମାନେ ଛପା ଅକ୍ଷରରେ ନିଜର ନାମଟିକୁ ଦେଖିବା ପାଇଁ ପତ୍ରିକା ଏକା କିଣନ୍ତି ନାହିଁ, ଅନ୍ୟମାନଙ୍କୁ କିଣିବା ପାଇଁ ପ୍ରବର୍ତ୍ତାନ୍ତି । ଲେଖକମାନେ ଲେଖା ଉପରେ 'କୁ' 'ଙ୍କୁ' ଲେଖିଲା ବେଳେ ସଂପାଦକମାନେ ମୌନେ ସମ୍ମତି ଲକ୍ଷଣ ପ୍ରକାଶ କରନ୍ତି ।

ଏହିଭଳି ଲେଖକଙ୍କୁ ମଧ୍ୟ ଆଉ ଜଣେ ଶିକାରୀ ଲେଖକ ଗୋଲକଧନ୍ଦାରେ ପକାଇ ଦିନରେ ଚନ୍ଦ୍ର ଦେଖାଇ ଦେଇଥିଲେ । କୌଣସି ସହରର ମିଛୁଆ ବଜାରର ଜନୈକ ଶିକାରୀ ଲେଖକ (ଯେଉଁ ଲେଖକ କି ମହିଳା ହଷ୍ଟେଲ ଗୁଡ଼ିକ ପାଖରେ ମୃଗୁଣୀ ଶିକାର କରିବା ପାଇଁ ଦିନରାତି ପଇଁତରା ମାରନ୍ତି । ନବୀନା କୁଆଁରୀମାନଙ୍କ ବଚନକୁ ଅମୃତ ତୁଲ୍ୟ ମଣି 'ଦେହି ପଦ ପଲ୍ଲବ ମୁଦାରଂ' କହି ନିଜକୁ ନୂତନ ଯୁଗର ଜୟଦେବ ସଜାନ୍ତି) ଏ ଲେଖକର ନାମକୁ ସନ୍ଧି ବିଚ୍ଛେଦ କରି କୌଣସି ପତ୍ରିକାରେ, ତାଙ୍କର ଗୋଟିଏ ଲେଖା ଉପରେ ଥୋଇ ଦେଉଥିଲେ ।

ଏ ଲେଖକ ନିଜେ ତ ଖଣ୍ଡିଏ ପତ୍ରିକା କିଣିଲା, ମାତ୍ର ଅନ୍ୟମାନଙ୍କୁ ବି ପଚିଶ ଖଣ୍ଡ ପତ୍ରିକା କିଣାଇଲା ।

"କେବଳ ବୟସ୍କଙ୍କ ପାଇଁ" ଲେଖାଟି ପତ୍ରିକାର କାଟତି ଆହୁରି ବଢ଼ାଏ । ସବୁ ଅପ୍ରାପ୍ତ ବୟସ୍କମାନେ ପତ୍ରିକା କିଣନ୍ତି ।

"କଣ ଝିଅଗୁଣୀଙ୍କ ପାଇଁ" ଶିରୋନାମାଟି ପଢ଼ି ଦେଲା ପରେ କୃଷ୍ଣ ମଥୁରାକୁ ଯିବା କଥା ଶୁଣି ଗୋପ ଗୋଈମାନେ ଛନ ଛନ ହେଲା ଭଳି, ମହିଳାମାନଙ୍କ ଛାତିରେ ଛନକା ପଶେ । ଜାତି କୁଳ ଉପେକ୍ଷି ଦେବାକୁ ତାଙ୍କର ମନ ହୁଏ ଲେଖାଟି ନ ପଢ଼ିବା ଯାଏ ।

ପୁଣି—

ସମସ୍ତେ ଜାଣନ୍ତି ଭୁଲମନ ଝୁଆଲ ସିଂ ମହାପାତ୍ରଙ୍କ ଓ୍ୱାଇଫ ମହାମାରୀ ଦେବୀ ବି ଜଣେ ସ୍ୱନାମଧନ୍ୟା ଲେଖିକା । ତାଙ୍କ ଲେଖା ପୁଣି ଯେ ପଢ଼େ ସେ ମୁଗ୍ଧ ହୋଇଯାଏ ।

ଏମିତି ଲେଖା !

ନବ-ଦମ୍ପତିମାନେ କୋକଶାସ୍ତ୍ର ନ ପଢ଼ି ତାଙ୍କ ଲେଖା ପଢ଼ନ୍ତି । ମହାମାୟା ଦେବୀଙ୍କ ଲେଖା ପଢ଼ିଲକ୍ଷଣି ବିଶେଷତଃ ଅନୂଢ଼ାମାନେ କାମ ବାଣରେ କ୍ଷତବିକ୍ଷତ ହୋଇ କଣ୍ଢିଆ ପରି କଅଁ କଅଁ ହୁଅନ୍ତି । ପ୍ରୋଷିତଭର୍ତ୍ତୃକାମାନେ ଋତୁକାଳୀନ କୁକୁର ଭଳି ରଡ଼ି ଛାଡ଼ନ୍ତି । କଲେଜ ପିଲମାନେ ଶେଇ, ତକିଆ ଉପରେ ମୁହଁ ମାଡ଼ି କଇଁ କଇଁ ହୋଇ କାନ୍ଦନ୍ତି । ବିପତ୍ନୀକମାନେ କାମୁଡ଼ା ବିଲୁଆ ଭଳି ହୋଇ ପତ୍ନୀ ଖୋଜିବା ପାଇଁ ମଧ୍ୟସ୍ଥି ଲେଉଡ଼ନ୍ତି ।

କିନ୍ତୁ—

ଆଜ୍ଞୁ ଖୋଳୁ ଖୋଳୁ ମହାଦେବ ବାହାରିଲ ଭଳି, ଘଟଣା-ଚକ୍ରରେ ଦିନେ ଧରା ପଡ଼ିଗଲା ଯେ ଜୁଆଳ ସିଂ ମହାପାତ୍ର କନ୍ୟା ଖୋଜୁଛନ୍ତି କାରଣ ସେ ଏବେ ଅବିବାହିତ ।,

ଖବର ମିଳିଲା ।

ପାତ୍ରୀ ଯୋଗାଡ଼ କରି ନିର୍ବନ୍ଧ ହେଲା । ବିବାହ ଦିନ ଠିକ୍ ହେଲା ।

କନ୍ୟାର ନାମ ତରଙ୍ଗିଣୀ ।

ଜୁଆଳ ସିଂ ମହାପାତ୍ର ବଡ଼ ଅଡୁଆରେ ପଡ଼ିଗଲେ । କେଉଁ ନାମରେ ନିମନ୍ତ୍ରଣ ପତ୍ର ଛାପିବେ ? ସମସ୍ତଙ୍କୁ ତ ସେ କହିଛନ୍ତି ତାଙ୍କ ସ୍ତ୍ରୀଙ୍କ ନାମ ମହାମାୟା ଦେବୀ । ବର୍ତ୍ତମାନ ତରଙ୍ଗିଣୀ ଲେଖିବେ କେମିତି ?

ଯାହା ହେଉ ।

ନିମନ୍ତ୍ରଣ ପତ୍ର ଛପାଗଲା ।

ସେଥିରେ ଲେଖା ହେଲା—"ସୁଲେଖିକା ମହାମାୟା ଦେବୀଙ୍କ ସହିତ ଠକୁର ଜୁଆଳ ସିଂ ମହାପାତ୍ରଙ୍କ ଶୁଭପରିଣୟ ଜାନୁଆରୀ ମାସ ୧୦ ତାରିଖ ଦିନ ଅନୁଷ୍ଠିତ ହେବ ।

ନିମନ୍ତ୍ରଣ ପତ୍ର ଖଣ୍ଡିକ କନ୍ୟାପକ୍ଷ ଯେତେବେଳେ ଦେଖିଲେ, ସେତେବେଳେ ତରଙ୍ଗିଣୀଙ୍କର ବିବାହ ଅନ୍ୟତ୍ର ଠିକ୍ କରି ଦେଲେ । ମଧ୍ୟସ୍ଥିଙ୍କ ଠାରୁ ଏକଥା ଶୁଣିଲା ମାତ୍ରେ ଭୁଲିମନଙ୍କ ମୁଣ୍ଡ ଘୂରିଗଲା । ସେ ଗୋପନରେ ଲୋକ ପଠାଇଲେ ଶାଶୁଙ୍କ ପାଖକୁ ଚିଠି ଖଣ୍ଡିଏ ଦେଇ । ସେଥିରେ ଲେଖିଥିଲେ—

"ମୁଁ ଆପଣଙ୍କ ଝିଅର ସୁନାମ ବଢ଼ାଇବା ପାଇଁ କୁମାରୀ ତରଙ୍ଗିଣୀ ସ୍ଥାନରେ ସୁଲେଖିକା କୁମାରୀ ମହାମାରୀ ବୋଲି ନିମନ୍ତ୍ରଣ ପତ୍ରରେ ଲେଖିଛି । ଲୋକେ ଯେପରି ଏ କଥା ନ ଜାଣନ୍ତି । ଜାଣିଲେ କହିବେ—"ନିଜେ ନିଜକୁ ବଡ଼ ହେଉଛି ।"

ପୁଣି—

ମୁଁ ଡାକ୍ତର ନୁହେଁ । କଅଣ ନାମ ପୂର୍ବରୁ ଡାକ୍ତର ବୋଲି ଲେଖୁଛି ସେ ବିଷୟରେ ପ୍ରଶ୍ନ ଉଠିଛି ।

ମୁଁ ଆଗରୁ ଡାକ୍ତର ନ ଥିଲି ଏକଥା ସତ । ଏବେ ଜଳନ୍ଧର ସହରରୁ ଦଶ ଟଙ୍କା ଦେଇ ଖଣ୍ଡିଏ ଡାକ୍ତରୀ ସାର୍ଟିଫିକେଟ ମଗାଇଛି ।

ବାଘୁଣୀ ଦେବୀ କହିଲେ—"ତୁମେ କ'ଣ ମୋତେ ଘୁଙ୍ଗା ଠଉରାଇଛ ? ମୋର ଭାଇଙ୍କ କଥା ମୋ ଆଗରେ ବଙ୍କେଇ ବଙ୍କେଇ କହୁଛ, ତୁମରତ ସାହସ କମ୍ ନୁହେଁ ।

ଗଣ୍ଡଭୈରବ କହିଲେ—"କହିଲେ କୁଳ କୁଟୁମ୍ବକୁ ଲାଜ ନ କହିଲେ କୁଳ ଭାସି ଯାଉଛି" ନିଜ କଥା ନିଜେ ନ କହି ପରକଥା କହୁଛ କେମିତି ?



# ନାରୀ ନାରାୟଣୀ

ଚନ୍ଦ୍ରଧର ବାବୁଙ୍କ ଚିନ୍ତା ଭେଦିବା ଭାରି କଷ୍ଟ ।

କିନ୍ତୁ—

ସେ ଅଠାକାଠି ପିଞ୍ଜରାରେ ଧରା ପଡ଼ିଛନ୍ତି ଜଣଙ୍କର ।

ସେ ଜଣକ କିଏ ଜାଣନ୍ତି ?

ତାଙ୍କ ସ୍ତ୍ରୀ, ମହାମାୟା ଦେବୀ ।

ଦୁନିଆଁରେ ସେ ଅନେକ ସ୍ଥାନ ବୁଲିଲେ, ଅନେକ କଥା ଶିଖିଲେ, ଅନେକଙ୍କ ହୃଦୟ ପରିବର୍ତ୍ତନ କରି ପାରିଲେ ।

ମାତ୍ର···

ସେ ତାଙ୍କର ସହଧର୍ମିଣୀଙ୍କର କେତେଗୁଡ଼ିଏ ବଦଭ୍ୟାସ ପରିବର୍ତ୍ତନ କରିପାରିଲେ ନାହିଁ ।

ସେଥିପାଇଁ···

ସେ ଦୁଃଖିତ ନୁହନ୍ତି, ଲଜ୍ଜିତ ।

ମହାମାୟା ଦେବୀଙ୍କୁ ଯେ ଦେଖିବ ସେ କଦାପି ଭାବିବ ନାହିଁ ଯେ ସେ ଏତେଗୁଡିଏ ବଦଭ୍ୟାସର ଆଧାର ବୋଲି ।

ଚନ୍ଦ୍ରଧର ବାବୁ ବି ମହାମାୟା ଦେବୀଙ୍କୁ ଦେଖିଲା ପରେ ତାଙ୍କର ସେଇମିତି ଧାରଣା ହୋଇଥିଲା । ଅନେଶ୍ୱର କନ୍ୟାଙ୍କର ପାଣିଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କଲାପରେ, ଶେଷରେ ମହାମାୟା ଦେବୀଙ୍କୁ ପ୍ରିୟା ଭାବେ ଗ୍ରହଣ କରିବାକୁ ବାଛିଲେ । ଚନ୍ଦ୍ରଧର ବାବୁ କ'ଣ ଜାଣିଥିଲେ ଯେ ମହାମାୟା ଦେବୀ ଏକ ଗନ୍ଧ ହରା ବସୁସର ପଳାଶ ଫୁଲ । ମନ ମଗର ତାଙ୍କର ମହାମାୟାଙ୍କ ପ୍ରେମ ସାଗରରେ ଉବୁ ଟୁବୁ ହେଲା ।

ଦିନ ପରେ ଦିନ ଗଡ଼ି ଯିବା ସଙ୍ଗେ ସଙ୍ଗେ ତାଙ୍କର ଗୁଣ ପଣ ସବୁ ଧରା ପଡ଼ିଗଲା ।

ଚନ୍ଦ୍ରଧର ବାବୁ ଗୋଟିଏ ଭଲ କାମରେ ନାକପୁଡ଼ାର ପବନ ବାର ଘରୁ ଅନୁକୂଳ କର ବାହାରଲା ମାତ୍ରେ, ମହାମାୟୀ ଦେବୀ ପଛରୁ ଡାକନ୍ତି,

"ହଇହେ, ହଗୁର ବାପା ! ଟିକଏ ଶୁଣି ଗଲ ?"

ଚନ୍ଦ୍ରଧର ବାବୁ ମନ କଷ୍ଟରେ ଘରକୁ ଫେର ଆସନ୍ତି । ଘରଣୀଙ୍କି ଆଉ ଦିନେ ପଛରୁ ନ ଡାକବା ପାଇଁ କଡ଼ା ତାଗିଦ୍ କରନ୍ତି ।

ଘରଣୀ ଏଣ୍ଡୁଅ ଭଳ ମୁଣ୍ଡ ଟୁଙ୍ଗାରନ୍ତି । ବହୁତ ଲଜ୍ଜି ହୁଅନ୍ତି । ଆଉ ଏଭଳ ଭୁଲ ନ କରବା ପାଇଁ ନର୍ଭର ପ୍ରତିଶ୍ରୁତି ଦଅନ୍ତି ।

ପୁଣି—

ଯେଉଁ କଥାକୁ ସେଇକଥା ।

ବହୁତ ମାନ ଅଭିମାନ ପରେ, ସେ ପଛରୁ ଡାକବା ବଦ ଅଭ୍ୟାସଟାକୁ ଛାଡ଼ିଲା-ବେଳକୁ ଆଉ ଏକ ନୂତନ ବଦଭ୍ୟାସ ତାଙ୍କ ଭିତରେ ମୁଣ୍ଡ ଟେକଲା ।

ଘରୁ କୁଆଡ଼କୁ ଅନୁକୂଳ କର ବାହାରଲା ମାତ୍ରେ ଦାଣ୍ଡ ଦୁଆରେ ଚନ୍ଦ୍ରଧର ବାବୁ ଖାଲ ମାଠିଆଟି ଦେଖନ୍ତି ।

ଚନ୍ଦ୍ରଧର ବାବୁ ବରକ୍ତ ହୁଅନ୍ତି ।

ଘରଣୀ ମହାମାୟୀ ଦେବୀ ସବୁ କଥା ବୁଝି ପାରନ୍ତି ।

ତା'ପରେ ।

ଦନେ ଆଉ ଏକ ବଦ ଅଭ୍ୟାସର ସଂଧାନ ଚନ୍ଦ୍ରଧର ବାବୁ ପାଆନ୍ତି । ସେ ବଦଭ୍ୟାସଟି ହେଲା—ଶୋଇଲା ମାତ୍ରେ ମହାମାୟୀ ଦେବୀ ମଇଁଷି ପରି ସଅଁ ସଅଁ ହୁଅନ୍ତି ।

ଚନ୍ଦ୍ରଧର ବାବୁ ବରକ୍ତ ହୁଅନ୍ତି ।

ଦନେ ଦନେ କହନ୍ତି—"ମଣିଷ ଗଧ ଖଟଣୀ ଖଟି ଖଟି ଅଫିସ୍‌ରେ ଆସିବ ।"

ଅଥଚ—

ଘରେ ଟିକଏ ଭଲ ନଦରେ ଶୋଇ ପାରବ ନାହିଁ, ଏଥିରେ ହେବ କ'ଣ ?

ମଣିଷ ।

ସବୁବେଳେ ମଣିଷ ।

ତା'ର ସହ୍ୟବାଟରେ ଧୈର୍ଯ୍ୟ ଅଛି । ସବୁବେଳେ ଗୋଟାଏ ମଣିଷକୁ ସବୁ କଥାରେ ଖୁଣ୍ଟିଲେ, ଯାଉଣୁ ଆସୁଣୁ ଦୋଷ ବାରଲେ, ମଣିଷର ମନ ମରିଯାଏ । ତା'ର ଧୈର୍ଯ୍ୟ ଚ୍ୟୁତ ଘଟେ ।

ସେହିପରି ଘଟିଲା ମହାମାୟା ଦେବୀଙ୍କର ।

ଚନ୍ଦ୍ରଧରବାବୁ ଦିନେ ବିରକ୍ତ ହେବାରୁ, ସେ କହିଲେ, "ହଇହେ ତୁମେ କେମିତିକା ମଣିଷମ ? ଦାଣ୍ଡରେ କୁଆଡ଼େ କ'ଣ ନା ପଡ଼ୁଛି । ଅମୁକ ତୁଆଳ ସିଂ ସମୁକ ମହାପାତ୍ର ।

ଆଉ

ଘରଭିତରେ ଏମିତି ବ୍ୟବହାର କ'ଣ ?

ମୋର ଯେତିକ ହେଲା, ସେତିକ ।

ମୁଁ ମୋ ବାପଘରକୁ ଚାଲିଯାଉଛି । ତୁମ ଘର ତୁମେ ସମ୍ଭାଳ ।

ଚନ୍ଦ୍ରଧର ବାବୁ ଦିନେ ଅଫିସ୍‌କୁ ଯାଉଥିବା ବେଳେ ମହାମାୟା-ଦେବୀ ହରିହରକୁଧରି ବାପଘରକୁ ଚାଲିଗଲେ । ବହୁତ ଦିନ ଧରି ରହିଲେ । ଯେ ଯେତେ ରକମରେ ବୁଝାଇଲେ ସେ ଆଉ ଶାଶୁଘରକୁ ଯିବାକୁ ମଙ୍ଗିଲେ ନାହିଁ ।

ଦିନେ

ମହାମାୟା ଦେବୀଙ୍କ ସାନ ଭଉଣୀ ଟୁକୁଣା ଇସ୍କୁଲରୁ ଗୋଟିଏ ଚିଠିଧରି, କାନ୍ଦି କାନ୍ଦି ଆସିଲା ।

ମହାମାୟା ଯେତେବେଳେ କାରଣ ପଚାରିଲେ—ଟୁକୁଣା ଚିଠି ଖଣ୍ଡିକ ବଢ଼ାଇ ଦେଲା ।

"ସେଥିରେ ଲେଖାଥିଲା, ଚନ୍ଦ୍ରଧର ବାବୁ ଭାରି ବେମାର, ବଞ୍ଚିବା କେଠିକଣା ।"

ମହାମାୟା ଦେବୀ ଭେଁ ଭେଁ କାନ୍ଦି ତଳେ ମୁଣ୍ଡ ପିଟିଦେଲେ । ସାଙ୍ଗେ ସାଙ୍ଗେ ଯିବାପାଇଁ ଶାଶୁଘରକୁ ବାହାରିଲେ ।

ତାଙ୍କ ଭାଇ ଗଲେ ।

ଟୁକୁଣା ଗଲା ।

ମହାମାୟା ଦେବୀ ହରିହରକୁ ନେଇଗଲେ ।

ଏମାନେ ଯେତେବେଳେ ରାତି ଅଧରେ ଚନ୍ଦ୍ରଧର ବାବୁଙ୍କ ଘରେ ପହଞ୍ଚିଲେ, ଚନ୍ଦ୍ରଧର ବାବୁ ସେତେବେଳେ ଶୋଇ ଖୁବ୍ ଜୋରରେ ଘୁଷୁଡ଼ି ଭଳି ଘୁଙ୍ଗୁଡ଼ି ମାରୁଥିଲେ ।

ଏମାନେ,

ପ୍ରଥମେ ଶୁଣି ଚମକି ପଡ଼ିଲେ ।

ତା'ପରେ କାନ ଡେରି ଶୁଣିଲେ—"ଚନ୍ଦ୍ରଧର ବାବୁ' ବଳି ବିଳଉଛନ୍ତି—"ନର ଯେମିତି ନରପୁଙ୍ଗବ, ନାରୀ ଯେମିତି ନାରପୁଣୀ, ତା' ଉପରେ ସାମାନ୍ୟ ସାମାନ୍ୟ କଥାରେ ଚଢ଼ିବା ଦରକାର ନାହିଁ ।

ପୁଣି

ସ୍ୱପ୍ନରେ ଏଥର କାନ୍ଦିଲେ ।

ମହାମାୟା ଦେବୀ ତାଙ୍କ ସାଙ୍ଗରେ ସ୍ୱର ବଳାରେ ରଡ଼ି ଛାଡ଼ିଲେ । ଚନ୍ଦ୍ରଧରବାବୁଙ୍କ ହୃଦ ଭାଙ୍ଗିଗଲା ।

ସେ କବାଟ ଫିଟାଇ ଦେଖନ୍ତି ତ—"ମହାମାୟା ଦେବୀ ପ୍ରଭୃତି ଠିଆ ହୋଇଛନ୍ତି ।"

ରୁକୁଣୀ ଚନ୍ଦ୍ରଧର ବାବୁଙ୍କ ପାଖକୁ ଯାଇଁ କ'ଣ ଚୁପୁଚୁପୁ କରି କହିଲା । ଆଜ୍ଞା ଯେତେ ପୁରସ୍କାର ଦେବା ।

ଚନ୍ଦ୍ରଧର ବାବୁ ଏଥର ଆସି ରସିକତା କରି କହିଲେ—"ଯାହା ହେବାର ତ ହେଲା ଏବେ ନାରୀ-ନାରପୁଣୀ ଗୃହ ପ୍ରବେଶ କରନ୍ତୁ ।"

ମହାମାୟା ରୁକୁଣୀର ଚାଲାକି ବୁଝିପାରିଲେ । ଦାନ୍ତ କଡ଼ମଡ଼ କରି କହିଲେ—

"ଛତର ଖାଇ, ମୁଁ ବଞ୍ଚିଥିଲେ ତୋ ମଜା ବୁଝିବି ।"



# କାଳିଆ ଜଳଦ ଗଲା ଗଲା

ସୌରଭ ସାଉଁଳା ଏକ ମଧୁର ସନ୍ଧ୍ୟା ।

ଆକାଶରେ ମାନ କାନ୍ତିକଧର ହସୁଛି ଗୋଟା ଜହ୍ନ । ମେଞ୍ଚା ମେଞ୍ଚା ହୋଇ ଝରିପଡ଼ୁଛି ସଫେଦ ଜୋଚ୍ଛ୍ନା । ନଈ ସେପାଖରୁ ଭାସି ଆସୁଛି ବିରହ-ବିଧୁର, ପ୍ରୀତି-ବିହ୍ୱଳା ଚକୋଇର କରୁଣ କ୍ରନ୍ଦନ ।

ପ୍ରଣବ,

ନବ ବିବାହିତ ପ୍ରଣବ ।

ତା'ର ଭୁଜବଲ୍ଲୀଙ୍କ ବେଢ଼ାଇ ବସିଛି ନବ ବିବାହିତା ପତ୍ନୀ ସ୍ନିଗ୍ଧାର ଲଳିତ ଲବଙ୍ଗଲତା ତନୁ ତନିମାରେ । ଏଥର ରସିକତା କରି, 'କାଳିଆ ଜଳଦ ଗଲା ଗଲା' କହି କୁତୁ କୁତୁ କଲା — ସ୍ନିଗ୍ଧାକୁ ।

ସ୍ନିଗ୍ଧା ଖିଲ୍ ଖିଲ୍ କରି ହସିଉଠିଲା ବେଳେ, ପ୍ରଣବ ମୁଣ୍ଡରୁ ତା'ର ଗୋଲାପୀ ଓଢ଼ଣାଟାକୁ ଟାଣିଦେଲା ।

ସ୍ନିଗ୍ଧା ଚୁପ୍ ଚୁପ୍ କରି ହସିଲା,

ଛି,

ଥାଉ,

ସତେ ତୁମେ ଭାରି ଦୁଷ୍ଟ ।

ପୁଣି — ଓଢ଼ଣାକୁ

ମୁଣ୍ଡରେ ଯଥାପୂର୍ବ ତଥା ପରଂ କରି ରଖି ଦେବାକୁ ଚାହିଁଲା ସେ,

ମାତ୍ର —

ପାରିଲାନି ।

ପ୍ରଣବ ଏଥର ସ୍ନିଗ୍ଧାର ଦୁଇ ହାତର ପାପୁଲିକୁ ଜାବୁଡ଼ିଧରି ଗେହ୍ଲେଇହୋଇ ପଚାରିଲା,

ଆଚ୍ଛା, କହିପାରିବ ସ୍ନିଗ୍ଧା, ଜାଣ କାହିଁକି ଓଢ଼ଣା ଦିଏ ?

ସ୍ନିଗ୍ଧା ଅନନ୍ତ ବଳୟେ ଉତ୍ତରଦେଲା,

"ସମ୍ଭ୍ରମ ପାଇଁ ।"

ପ୍ରଣବ ଏଥର୍ "ଉହୁଁ" କହି ନାସ୍ତି ସୂଚକ ମୁଣ୍ଡ ହଲାଇଲା ।

ସ୍ନିଗ୍ଧା ପଚାରିଲା,

"ଆଉ ?"

ପ୍ରଣବ ହସି ହସି କହିଲା,

ମୁଁ ଯଦି କହେ, ପୁରୁଷର ଧୈର୍ଯ୍ୟ କଳିବା ପାଇଁ, ବଳ କଷିବା ପାଇଁ, ନାରୀର ଓଢ଼ଣା ଏକ ଅସ୍ତ୍ର । ଓଢ଼ଣାର ଆଢ଼ୁଆଳରେ ନାରୀ ନିରୀକ୍ଷଣ କରେ ପୁରୁଷର ପୌରୁଷଦୀପ୍ତ ମୁଖ-ମଣ୍ଡଳ ଆଡ଼କୁ ଯେମିତି ଅବଲୋକନ କରେ ବ୍ୟାଘ୍ର ମଣିଷକୁ ।

ଏହିପରି ନବଦମ୍ପତିଙ୍କର ବିଶ୍ରମ୍ଭ ଆଳାପରେ କଞ୍ଚିତ୍‌କାଳ ଗମନ କରନ୍ତେ, ଦାଣ୍ଡ ଦରଜାରେ ଠକ୍ ଠକ୍ ଶବ୍ଦ ଶୁଭିଲା ।

ସ୍ନିଗ୍ଧା କହିଲା—

"ହେ ତୁମକୁ ମୋ'ରାଣ । ଛାଡ ଛାଡ ମୋତେ । ବାପା ବୋଉ ବୋଧହୁଏ ସାନ୍ଧ୍ୟ ଭ୍ରମଣରୁ ଫେରିଲେଣି ।"

ପ୍ରଣବ ଛାଡ଼ିଦେଲା ସ୍ନିଗ୍ଧାକୁ ।

ବୁଭୁକ୍ଷୁ ସର୍ପ ମୁଖରୁ ଆହାର ଛଡାଇ ନେଲେ ତା'ର ଯେଉଁଭଳି ମାନସିକ ଅବସ୍ଥା ହୁଏ, ସେହିଭଳି ଏକ ଅବସ୍ଥାର ଦାସ ହୋଇଥିଲା ପ୍ରଣବ ।

ସେ କିଛି ନ ଜାଣିଲାଭଳି ଡାକି ଡାକି ଗଲା—

"ଯାଉଛି ଯାଉଛି ବୋଉ ।"

କବାଟ ଖଡ଼ ଖଡ଼ ଆହୁରି ଜୋରରେ ଶୁଭିବାରେ ଲାଗିଲା । ପ୍ରଣବ ମନେ ମନେ ବାପ ମା'ଙ୍କ ଉପରେ ବିରକ୍ତ ହେଲେ ମଧ୍ୟ, ତାର

ପ୍ରତିକ୍ରିୟା ଯେପରି କଥାରେ ପ୍ରକାଶ ନପାଏ, ସେଥିପାଇଁ ନିଜକୁ ସଂଯତ କରିବାକୁ ଚେଷ୍ଟା କରୁଥିଲା ସେ । ଏଥର କବାଟ ଖୋଲିଦେଲା ପ୍ରଣବ ।

ପ୍ରଣବ ଦେଖିଲା, ବାପ ମା' ଆସିବା ପରିବର୍ତ୍ତେ—ଆସିଛନ୍ତି ଅତନ୍ତ୍ରା ଆଠଜଣ ଲୋକ ଦୁଇଟି ଲୁହା—ଆଲମାରୀ ଆଣି । ଜଣକ ବ୍ୟତୀତ ଅନ୍ୟମାନେ ଦାଣ୍ଡ ଚଉଁରା ଅଁଳାଗଛ ମୂଳ ଠିଆ ହୋଇ, ଅଁଳା

କୋଳ ଗୋଟାଇ ଖାଇବାରେ ଲାଗିଛନ୍ତି । ସିଏ ଆସି କବାଟ ଖଡ଼ ଖଡ଼ କରୁଥିଲା, ସିଏ ପ୍ରଣବକୁ ଦେଖିଲା ମାତ୍ରେ ଆଗ୍ରହରେ ପଚାରିଲା—

"ଏ କ'ଣ ମନୋଜ ରାୟଙ୍କ ଘର ?

'ହଁ' ।

ଯାଙ୍କର ପୁଅ ଡକ୍ଟର ପ୍ରଣବ ରାୟ ଏବେ ମେଘନାଦପୁରର କମ୍ପୁ ପଟ୍ଟନାୟକଙ୍କ ଝିଅ ସ୍ନିଗ୍ଧାକୁ ବିବାହ କରିଛନ୍ତି ନା ?

'ହଁ' ।

ଲୋକଟି ପୁଣି ପଚାରିଲା—

ଆଚ୍ଛା, ଆପଣ କିଛି ଭାବିବେ ନାହିଁ, ମୁଁ ଆପଣଙ୍କର ପରିଚୟ ପାଇ ପାରେ କି ?

ପ୍ରଣବ ମୃଦୁ ହସା ଦେଇ କହିଲା—"ମୁଁ ହେଉଛି ମନୋଜ ରାୟଙ୍କ ପୁଅ ପ୍ରଣବ ?"

ଲୋକଟି ଏଥର ଚରଣ ତଳେ ଭାଙ୍ଗି ପଡ଼ିଲା ଯେମିତି । ମସ୍ତକ ନତ କରି ପ୍ରଣାମ ବାଡ଼ିଲା ।

ତା'ପରେ·········

ହାତ ଠାରି ଅଁଳା ଗଛ ମୂଳେ ଠିଆ ହୋଇଥିବା ଲୋକମାନଙ୍କୁ ଡାକିଲା —

"ଆରେ ଆସ, ଆସ, ସେଠାରେ କ'ଣ କରୁଛ ? ଆମ ଆଗରେ ଆମ ଜୋଇଁ ସାହେବ ଯେ······।"

ବହୁଦିନର ଏକାନ୍ତ ଅନୁଗତ ଭଳି ବ୍ୟବହାର ପ୍ରଦର୍ଶନ କଲେ ସମସ୍ତେ ।

ସ୍ତମ୍ଭୀଭୂତ ହୋଇଗଲା ପ୍ରଣବ । ମନେ ମନେ ଭାବିଲା—ଗାଉଁଲି ଲୋକମାନେ କେଡ଼େ ସରଳ, କେଡ଼େ ମମତା ପରିପୂର୍ଣ ପରେ । କଥା-ବାର୍ତ୍ତା ପ୍ରସଙ୍ଗରେ ଜାଣିବାକୁ ପାଇଲା ଯେ ଯେଉଁ ଲୋକଟି କବାଟ ଖଡ଼ ଖଡ଼ କରୁଥିଲା, ତାର ନାମ—

ଚନ୍ଦ୍ରଧର ।

ଏଥର ଚନ୍ଦ୍ରଧର ଆସି କହିଲା—"ବାବୁ, ଅଲମାଣ୍ଡ ଦୁଇଟି ଆପଣଙ୍କ ଶ୍ୱଶୁର ଘରୁ ଆସିଛି । କେଉଁଠି ରଖିବା ? ଆମେ ରଖି ଦେଇ ଚାଲିଯିବୁ ।"

ଏତକ ବେଳେ ସ୍ନିଗ୍ଧା ଆସି ମୁଣ୍ଡରେ ଓଢ଼ଣା ଟାଣି ଠିଆ ହୋଇଗଲା ।

ଚନ୍ଦ୍ରଧର ଅତି ପରିଚିତ ପରି ପ୍ରଣାମ କରି କହିଲା—"ମୋତେ କ'ଣ ଲାଜ କରୁଛନ୍ତି ଦେଈ ? ମୁଁ ପରା ତୁମ ଗୁରୁଙ୍କର ବଂଶୀଧର ପୁଅ ଚନ୍ଦ୍ରଧର ।

ସ୍ନିଗ୍ଧା ଟିକିଏ ଘୁମ ଖାଇ ଠିଆ ହୋଇଗଲା । ତା'ପରେ ମନେ ପକାଇଲା, ହଁ—ହଁ ଏଥର ତା'ର ମନେପଡ଼ିଲା । ସେ ବାହା ହୋଇ ଆସିବା ପୂର୍ବରୁ ଶୁଣିଥିଲା ତାଙ୍କ ଗୁରୁଙ୍କର ପୁଅ ଚନ୍ଦ୍ରଧର ବିଦେଶରୁ ଆସିବ । ପିଲାଦିନରୁ ସେ ପ୍ରବାସୀ । ସେହି ଚନ୍ଦ୍ରଧର ଏ, ଖାସା ପିଲାଟିଏ ତ !

ସ୍ନିଗ୍ଧା ଆଉ ଲାଜକଲାନି । ଆଲମାରୀ ଆଣି ଆସିଥିବା ଲୋକମାନଙ୍କୁ ଘର ଭିତରକୁ ନେଇ ଅସଙ୍କୋଚରେ ଗୁଡ଼ା, ଜଳଖିଆ ଖାଇବାକୁ ଦେଲା । ବକ୍‌ସିସ୍ ଦୁଇ ଦୁଇଟଙ୍କା ପ୍ରତ୍ୟେକଙ୍କୁ ଦେଲା । ସେମାନେ ଆଲମାରୀ ଦୁଇଟି ଘରେ ରଖିସାରି ବିଦା ହୋଇଗଲେ ।

—ଦୁଇ—

ମନୋଜ ବାବୁ ଆଜ ତାଙ୍କ ସହଧର୍ମିଣୀ ସାନ୍ଧ୍ୟ ଭ୍ରମଣରୁ ଫେରି, ଆଲମାରୀ ଦୁଇଟିକୁ ଦେଖି ପଚାରିଲେ—

"ଏହା କୁଆଡୁ ଆସିଲା ?"

ପ୍ରଣବ ଉତ୍ତର ଦେଲା—"ମେଘନାଦପୁରରୁ ଆସିଛି ।"

ମନୋଜ ବାବୁ ଖଣ୍ଡିକାଶରେ ମାମଲତକାରୀ ଖଇକଡ଼ା ଛପନ ଘର ପୂରାଇ, ଠୋ' ଠୋ' କରି ହସି କହିଲେ—

"ମୁଁ ସେଦିନ ବାହାଘର ବେଳେ ଯେଉଁ ପଦ୍ମତୋଳା ପଡ଼ିଥିଲି ନା, ତାକୁ ତ ଶୁଣି ସର୍ପ ବନ୍ଧରେ ରହିଯାଇବ ନାହିଁ, ଆଉ କମ୍ପୁ ପଟ୍ଟନାୟକ ଧୈର୍ଯ୍ୟଧରି ରହିଥାନ୍ତା କେମିତି ? ଜବାବ ଅନୁଯାୟୀ ସବୁ ଜିନଷ ନ ଦେବାଯାଏ, ମୁଁ ତାକୁ ଛାଡ଼ୁଛି କେଉଁଠି ? ହର୍ଷୋଚ୍ଛଫୁଲ୍ଲ ଭାବରେ ଏଥର କହିଲେ—

"ଆରେ ପ୍ରଣବ, ଚାବି ଆଣିଲୁ । ଆଲମାରୀ ଖୋଲି ଦେଖିବା ।"

ପ୍ରଣବ ଚାବି କଥା ଯାଇଁ ସ୍ନିଗ୍ଧାକୁ ପଚାରିଲା ।

ସ୍ନିଗ୍ଧା କହିଲା—'ମୁଁ ଭାବିଲି ତୁମେ ରଖିଥିବ ।'

ପ୍ରଣବ କହିଲା—'ଆରେ ମୁଁ ଭାବିଲି ତୁମେ ରଖିଥିବ ।'

ମନୋଜ ବାବୁ ଯେତେବେଳେ ଶୁଣିଲେ ଚାବିଟା ରଖି ନାହାନ୍ତି ସେତେବେଳେ 'ପାଠୁଆ ମୂର୍ଖ, ଭାରତୀୟ ପ୍ରଥମ ବୋକା' ପ୍ରଭୃତି କଣ୍ଟୁ-ମନ୍ତବ୍ୟ ଦେଇ ଚୁପ୍ ହୋଇ ରହିଲେ । କଥା ହେଲା ସକାଳେ ଯାଇଁ ଘରର ଚାବି ଆଣିବ ।

—ତିନି—

ରାତ୍ରୀ ଶେଷ ।

କାଉ ରାବୁଛି—'କା'

କୁକୁଡ଼ା ଡାକୁଛି, 'ଚନ୍ଦ୍ରଧର ପାରକର ।'

ସନ୍ଧ୍ୟା ବେଳ ଭଳି ଆଠଜଣ ଲୋକ ଆସି ହାଜର ହେଲେ । କରୁଣ କ୍ରନ୍ଦନରେ ଗଗନ, ପବନ ଫଟାଇଲେ । ମନୋଜ ବାବୁ ନିଦ ମଳ ମଳ ହୋଇ ଉଠି ପଚାରିଲେ—

"ଏ ଅସମୟରେ ତୁମ୍ଭେମାନେ କିଏ ?"

ଲୋକମାନଙ୍କ ଭିତରୁ ଜଣେ କହିଲା—'ଆଜ୍ଞା, ଆଲମାରି ଦୁଇଟି ଆମ୍ଭେମାନେ କାଲି ଭୁଲରେ ଆପଣଙ୍କ ଘରେ ଦେଇଯାଇଛୁ ।

ପ୍ରକୃତରେ ତାହା ହେଉଛି, ମନ୍ମଥପୁର ମନୋଜ ପଟ୍ଟନାୟକଙ୍କର । ପ୍ରଣବ ବାବୁ କୁଆଡେ ଗଲେ ?

ମନୋଜ ବାବୁ ହସିଲେ ।

ଓଃ, ଏଇ କଥାଟା ? ଆରେ ପ୍ରଣବ ସାଙ୍ଗରେ କ'ଣ ଅଛି ? ଠିକ୍ ଅଛି । ମୋ' ସଙ୍ଗାତ ଘରକୁ ଯିବାର କଥା । ମୋ' ଘରକୁ ଚାଲିଆସିଛି । ଏୟା ତ ? ତା' ନାଁ ଯାହା, ମୋ' ନାଁ ସେୟା, ତା' ପୁଅ ବୋହୂଙ୍କ ନାଁ ଯାହା, ମୋ ପୁଅ ବୋହୂଙ୍କ ନାଁ ବି ସେୟା । ଏତେ ବ୍ୟସ୍ତ କାହିଁକି ? ଆମେ ତ ତୁମ ଆଲମାରି ଖୋଲିନାହୁଁ । ନେଇଯାଅ, ତୁମ ଆଲମାରି ନେଇଯାଅ ।" ଆଲମାରି ଦୁଇଟି ଲୋକମାନେ ନେଇ, ମନୋଜ ବାବୁଙ୍କୁ ପ୍ରଣାମ କରି ଚାଲିଗଲେ ।

## —ଗ୍ଚ୍ଛ—

ସ୍ନିଗ୍ଧା ଗାଧୋଇ ଆସି ଶାଶୁ ଠାକୁରାଣୀଙ୍କ ପା'ପାଣି ନେଲା ବେଳେ ସେ ବୋହୂ ବେକକୁ ଅନାଇ ଦେଇ, ଚମକି ପଡି ପଚାରିଲେ—"କିଲୋ, ତୋ' ହାରବସା ହାରଟି କାହିଁ ?"

ସ୍ନିଗ୍ଧା କହିଲା—"ମୁଁ ରଖି ଦେଇଛି ।"

ଶାଶୁ ନୀରବ ରହିଲେ । ସେ ଭାବିଲେ, ପ୍ରଣବଟା ଗହଣାକୁ ଭଲ ପାଏ ନାହିଁ । ବୋଧହୁଏ କ'ଣ କହିଛି, ସେ ଓହ୍ଲାଇ ରଖି ଦେଇଛି ।

ଅଳ୍ପ ସମୟ ପରେ—

ପ୍ରଣବ ଗାଧୋଇ ସାରି, ପୋଷାକପତ୍ର ପିନ୍ଧି ସାରିଲା ପରେ ତା'ର ଘଣ୍ଟାଟା ଖୋଜିଲା । ମିଳିଲା ନାହିଁ । ମନୋଜ ବାବୁଙ୍କ କାନକୁ କଥା ଗଲା । ତାଙ୍କର ମନରେ ସନ୍ଦେହର କାଳ-ସର୍ପ ଦଂଶନ କଲା । ସେ ଆସି ଟ୍ରେଜେରୀ ଖୋଲି ଦେଖନ୍ତି ତ ଟଙ୍କା, ସୁନା, ଆଉ ଅଳଙ୍କାର କିଛି ନାହିଁ । ସେ ହଠାତ୍ ତଳେପଡ଼ି ଯାଇଁ ଅଚେତ୍ ହୋଇଗଲେ । ତାଙ୍କୁ ପାଣି ପିଆଇ ସାନ୍ତ୍ୱନା କରାଗଲା ।

ତୁଣ୍ଡ ବାଇଦ ସହସ୍ର କୋଶ । କାନ ବାଟେ କଥା ଚାଲିଲା । ଶହ ଶହ ଲୋକ ରୁଣ୍ଡ ହେଲେ । ମନୋଜ ବାବୁଙ୍କର ଆଉ ସନ୍ଦେହ ରହିଲା ନାହିଁ ଯେ ଯେଉଁମାନେ ଆଲମାରୀ ଆଣି ଆସିଥିଲେ, ସେମାନେ ସମସ୍ତେ ଜଣେ ଜଣେ ତାଲିମପ୍ରାପ୍ତ ଡକାୟତ । ସେହିମାନଙ୍କର କାମ ଏ ।



# ପେସ୍କାର ଓ ପାଉଣା

ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ଭଉଣୀ ସରିତା ବିଭା ହେବାର ଆଜକୁ ସ୍ୱରବର୍ଷ ହୋଇଗଲା ।

**ମାତ୍ର—**

ଇନ୍ଦ୍ରଦ୍ୟୁମ୍ନ ବାବୁ ଥରେ ହେଲେ ତା' ଦୁଆରେ ପାଦ ପକାଇ ନାହାନ୍ତି । ପର୍ବ ପର୍ବାଣୀରେ, ଯାନ ଯାତରାରେ ଯଥା ବିଧିପୂର୍ବକ, ଭାର ବେଭାର ପଠାଇଦେଇ, ନିଦକ ହୋଇ ବସିଛନ୍ତି । ଭଉଣୀ ସରିତା ଯେତେ ଖବର ପଠାଏ, ଭଣେଇ ରଙ୍କ ରତନବାବୁ ଯେତେ ଚିଠି ଲେଖୁଛନ୍ତି, ସେ ଯାଇ ପାରନ୍ତି ନାହିଁ ।

ସେ ଯିବେ ବା କେତେବେଳେ ?

ଯିବାକୁ ତର କାହିଁ ?

ଛାଡ ପିତୃ କାର୍ଯ୍ୟ, କର ରାଜକାର୍ଯ୍ୟ । ରାଜକାର୍ଯ୍ୟରେ ହବୁଡବେଳେ ଦିନ ଯାଉଛି । ସେ ଭାରି ବ୍ୟସ୍ତ । ସେ ଭାରି ଜଞ୍ଜାଳୀ । ଶୋଇବାକୁ ଟିକେ ସମୟ ନାହିଁ । ଖାଇବାକୁ ଟିକେ ଫୁରସତ୍ ନାହିଁ । ଦିନରେ ଖାଇସାରି, ଖଟ ଉପରେ ଶୋଇ ଦି'ଘଣ୍ଟା ନିଃଶ୍ୱାସ ମାରିବା ତାଙ୍କ ଭାଗ୍ୟରେ ଘଟେ ନାହିଁ । ଖାଇ ସାରିଲା ମାତ୍ରେ ଅଫିସ୍‌କୁ ଧଇଁ ସଇଁ ହୋଇ ଦଉଡନ୍ତି ।

ଅଫିସ୍‌ରେ ପଣକା ପଣ କର୍ମଚାରୀ ଅଛନ୍ତି । ଇନ୍ଦ୍ରଦ୍ୟୁମ୍ନ ବାବୁ ଅଫିସକୁ ନ ଗଲେ କେମିତି ଅଫିସଟା ଖାଁ ଖାଁ ଗୋଡ଼ାଏ । ହାକିମଙ୍କ ମିଜାସ୍ ହଠାତ୍ କଡ଼ା ହୋଇ ଉଠେ । ଓକିଲ ମହକିଲ ମାନଙ୍କ ମୁହଁ ଖଟା ହୋଇଯାଏ ।

ଇନ୍ଦ୍ରଦ୍ୟୁମ୍ନ ବାବୁ ଗର ହାଜର ରହନ୍ତି ନାହିଁ । ପେସ୍କାର ବ୍ଲକସି, ଦିନେ ଅଫିସ୍‌ରୁ ଅନୁପସ୍ଥିତ ରହିଲେ ସବୁ ଗୋଳମାଳ ହୋଇଯାଏ ।

ଅଙ୍ଗେ ନାହିକଥା । ଏପରି ହୋଇଛି, ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ବାପ ମା' ମରିଛନ୍ତି, ସେ ଅଫିସ୍ ଛାଡ଼ି ଗାଁକୁ ଯାଇ ପାରନ୍ତିନାହାନ୍ତି ।

ତେବେ—

ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କର ହାଡ଼ଭଙ୍ଗା ଖଟଣୀ ଯେମିତି, ଉପୁରି ଦି' ପଇସା ଅଛି ସେମିତି । ଇନ୍ଦ୍ରଦ୍ୟୁମ୍ନ ବାବୁ ପଇସାକୁ ଭଲ ଭାବରେ ଚିହ୍ନନ୍ତି । ଧନ ଅର୍ଜନର ସୁଗମ ପନ୍ଥା ତାଙ୍କୁ ବେଶ୍ ଜଣା ।

ସେ ପ୍ରତି କଥାରେ କହନ୍ତି :—

"ଧନ ଅର୍ଜନେ ଧର୍ମ କର

ଧର୍ମେ ପ୍ରାପତ ନରହର ।"

ସେ ଏକା ନୁହନ୍ତି । ତାଙ୍କ ସାନଭାଇ ଡାକ୍ତର ଦୁର୍ମଦ କିଶୋର ମଧ ତଦ୍ରୂପ । ସେ ନିଜର ସ୍ତ୍ରୀଙ୍କଠାରୁ ମଧ ପଇସା ଔଷଧ ବାବଦରେ ନେଇ ଏକାଉଣ୍ଟ ଠିକ୍ ରଖନ୍ତି ।

ଇନ୍ଦ୍ରଦ୍ୟୁମ୍ନ ବାବୁ ବସିଲେ ପଇସା, ହସିଲେ ପଇସା, ଗୁଙ୍ଗିଲେ ପଇସା ପାଆନ୍ତି । ଏପରି କି ପାଇଖାନାରୁ ଫେରିଲା ବେଳେ ତାଳବେ ପଇସା ଭର୍ତ୍ତିକରି ଫେରନ୍ତି । ଏକାନ୍ତ ଅନୁଗତ ଲୋକମାନେ ପାଇଖାନା ପାଖରେ ଛକି ପଇସା ଦିଅନ୍ତି । ଇନ୍ଦ୍ରଦ୍ୟୁମ୍ନ ବାବୁ ଜାଣନ୍ତି ଜାତିର ଜନକ-ମହାତ୍ମା ଗାନ୍ଧୀ ତ ପୁଣି ପାଇଖାନାରେ ଅନେକ କାମ କରୁଥିଲେ ? ଗୃହିଣୀ ତାଙ୍କରୁ ଟଙ୍କା ଅଡ଼ାଇ ରଖିଲା ବେଳେ ନିଜକୁ କୃତକୃତ୍ୟ ମନେ କରନ୍ତି । ଭାଗ୍ୟ, ଭଗବାନଙ୍କୁ କୃତଜ୍ଞତା ଜଣାନ୍ତି ।

ସତେ ?

ଭାଗ୍ୟରେ ଥିଲେ ଏଭଳି ସ୍ୱାମୀ ମିଳନ୍ତି ସିନା ?

ଇନ୍ଦ୍ରଦ୍ୟୁମ୍ନ ବାବୁ ଅଫିସ୍ କୁ ପଶିଗଲା ମାତ୍ରେ ମହୁମାଛି ମହୁ ଫେଣାକୁ ଘେରିଲା ଭଳି, ଓକିଲ, ମୁକ୍ତିଆର, ମୋହରିର, କମିସନ ଏଜେଣ୍ଟ, ମିଷ୍ଟ୍ରି, ମହାଜନ, ସାଧାରଣ ଲୋକ ଘେରିଯାଆନ୍ତି ତାଙ୍କୁ । ଇନ୍ଦ୍ରଦ୍ୟୁମ୍ନ ବାବୁ କାନରେ ଖୋସିଥିବା ସାହାଡ଼ା ଡାଳଟିକୁ କାଢ଼ି ଟେବୁଲ୍ ଉପରେ ରଖି, ଏକାନ୍ତ ବାଧ ଶିଶୁଟି ଭଳି ଚେୟାର ଉପରେ ବସି ପଡ଼ନ୍ତି । କାନରେ ସାହାଡ଼ା ଡାଳ ଖୋସିବା କଥାଟି ସେ ଶାରଳା ମହାଭାରତରୁ

ଶିଖିଛନ୍ତି । ଲକ୍ଷ୍ମୀବନ୍ତ ପୁରୁଷ ଇନ୍ଦ୍ରଦ୍ୟୁମ୍ନ ବାବୁ । ଲକ୍ଷ୍ମୀ ତାଙ୍କ କାନ୍ଧରେ ବସା ବାନ୍ଧିଛନ୍ତି । କଥାପଦେ କହିଲେ, ତାଙ୍କୁ କିଛି ସଲାମୀ ଦେବାକୁ ହୁଏ ?

ହାକିମ୍ ଖଣ୍ଡେ ଦେଖିବାକୁ ହେଲେ ତା ସାଙ୍ଗରେ ବି ଟଙ୍କା ଦେବାକୁ ହୁଏ । ତାରିଖ ଜାଣିବାକୁ ହେଲେ ଟଙ୍କାଟିଏ ଲୋଡ଼ା । କେସ୍ ନମ୍ବର ଜାଣିବାକୁ ହେଲେ ଆଠ'ଣା ଆବଶ୍ୟକ । ଖାଇବା ପିଇବାଟା ସବୁଲଭ ଲୋକଙ୍କଠାରୁ ମିଳେ ।

ସନ୍ଧ୍ୟାବେଳକୁ ପକେଟ ଭର୍ତ୍ତିକରି ଘରକୁ ବାହୁଡ଼ନ୍ତି ଇନ୍ଦ୍ରଦ୍ୟୁମ୍ନ ବାବୁ ।

ଟଙ୍କା ।

ମୁହଁ କରେ ବଙ୍କା ।

ବିନା ଟଙ୍କାରେ କାହାକୁ ଚାହିଁବାକୁ ଇଚ୍ଛା ହୁଏ ନାହିଁ ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କର ।

ଇନ୍ଦ୍ରଦ୍ୟୁମ୍ନ ବାବୁ ସେହି ପେସ୍କାର ଚୌକିଟି ଖଣ୍ଡିକ ପାଇଁ କେତେ କଷ୍ଟ କରିନାହାନ୍ତି ସତେ ? ଅସାଧ୍ୟ ସାଧନ କରିଛନ୍ତି ସେ । ନିଜ ଘରଣୀଙ୍କ ବେକରୁ ହାର ବନ୍ଧା ପକାଇ, ବଡ଼ ମାଛ ନେଇ ଉପରିସ୍ଥ ହାକିମଙ୍କୁ ଭେଟି ଦେଇଛନ୍ତି । ପୁଅ ବେକର ଏକଭରିଆ ଚେନ୍ ବିକି ହାକିମାଣୀଙ୍କ ମନ ସନ୍ତୋଷ ପାଇଁ ପୂଜା-ପର୍ବରେ ଫଳ-ଫୁଲ ଶାଗ ନେଇ ଦେଇ ପ୍ରଶଂସା ଭାଜନ ହୋଇଛନ୍ତି । ଯାନି ଯାତ୍ରାରେ ହାକିମଙ୍କ ପିଲାମାନଙ୍କୁ ଯାତ୍ରା ଖର୍ଚ୍ଚ ଦେବା ପାଇଁ କରଜ ବି କରିଛନ୍ତି । କଟକ ଚଣ୍ଡୀ, ଧବଳେଶ୍ୱରଙ୍କୁ ଭୋଗ ଦେବା ତ ନିତ୍ୟ ନୈମିତ୍ତିକ ଘଟଣା ।

ପୁଣି—

ଗ୍ରହ ଶାନ୍ତି ପାଇଁ ହୋମ ଯଜ୍ଞ ବି ହୁଏ ।

ବେଳେ ବେଳେ,

ଜ୍ୟୋତିଷଙ୍କୁ ଡାକି ହାତ ଦେଖାଇବା ନିମିତ୍ତ କିଛି ଅର୍ଥ ବି ବ୍ୟୟ କରିବାକୁ ହୁଏ ।

ଯୋଗକୁ ବ୍ରହ୍ମା ଖଣ୍ଡେ ନାହିଁ ।

ଦିନକର କଥା ।

ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ଭଣୋଇ ରଙ୍କ-ରତନବାବୁ ଆସିଲେ ସାକ୍ଷାତ କରିବାକୁ ଅଫିସ୍‌ରେ । ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ଅଫିସରେ ନମସ୍କାର ଜଣାଇଲେ, ପ୍ରତି ନମସ୍କାର ମିଳିଲା ନାହିଁ । ବିନା ଦର୍ଶନୀରେ ଯେଉଁମାନେ ନମସ୍କାର କରନ୍ତି ଇନ୍ଦ୍ରଦ୍ୟୁମ୍ନ ବାବୁ ସେଥିପ୍ରତି କେବେହେଁ ଗୁରୁତ୍ୱ ଆରୋପ କରନ୍ତି ନାହିଁ ।

ସେ ତାଙ୍କ ସ୍ୱଭାବ ସୁଲଭ ଶୁଖିଲା ହସ ହସି କହନ୍ତି—

"ଅଲିଳ ନସିଂଚି ଖାଲି ଦଣ୍ଡବତ
କରିବାକୁ ଛନ୍ତି ଲୋକ ଶତ ଶତ ।"

ଇନ୍ଦ୍ରଦ୍ୟୁମ୍ନ ବାବୁତ ରଙ୍କ-ରତନ ବାବୁଙ୍କୁ ଚିହ୍ନିନାହାନ୍ତି ? ରଙ୍କ-ରତନ ବାବୁଙ୍କ ଭଳି କେତେ ଲୋକ ଆସୁଛନ୍ତି । କାହାକୁ କିଏ ପଚାରେ ? ଚଷମା ଭିତରେ ଇନ୍ଦ୍ରଦ୍ୟୁମ୍ନ ବାବୁ ରଙ୍କ-ରତନ ବାବୁଙ୍କୁ ଅନାଇ ଦେଇ ନିଜ କାର୍ଯ୍ୟରେ ଲାଗିଲେ ।

ରଙ୍କ-ରତନ ସେହିଭଳି ଶିଙ୍ଗୁଆ ବୃକ୍ଷ ଭଳି ଠିଆ ହୋଇ ରହିଲେ । ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ଚପରାଶୀ ଡାକି କହିଲା—

"ହଇହୋ ବାବୁ ! ଖାଲି ମାଥିଆ ଫେର୍ ଫାର୍ କାହିଁକି ? କିଛି ଦର୍ଶନୀ ପକାଇ କଥା କୁହ ?"

ରଙ୍କ-ରତନ ବାବୁ ମନେ ମନେ ହସିଲେ ।

ସବୁ ଯୁଗରେ, ହରିକାଳ-ର ଏମିତି ଜଣେ ଜଣେ ଶ୍ରୀ ଘୁମୁ ଘୁମୁଆ ଥାନ୍ତି । ସେ ଶିବଙ୍କର ସାପ ସାଜି ଗରୁଡ଼ ଉପରେ ପ୍ରତାପ ଦେଖାନ୍ତି । ଏ ଚପରାଶୀ ଜୀବ ସେପ୍ରା !

ରଙ୍କରତନ ବାବୁ ପରାସ୍ତ ସୈନିକ ପରି ପଛଘୁଞ୍ଚା ଦେଇ ଅଫିସ୍ ଭିତରୁ ବାହାରିଗଲେ ।

ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ବସାରେ ଯାଇ ପହଞ୍ଚିଲେ ।

ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ଘରଣୀ ରଙ୍କରତନ ବାବୁଙ୍କୁ ଚିହ୍ନିଥିଲେ । ଥରେ ସଉତାକୁ ଆଣିବାକୁ ନିଜେ ଯାଇଥିଲେ ସେ । ରଙ୍କରତନ ବାବୁଙ୍କୁ ଦେଖିଲାକ୍ଷଣି ବହୁତ ଆଦର କଲେ ।

ରଙ୍କରତନ ପକେଟରୁ ଟଙ୍କା କେତୋଟି କାଢି ଗଣି ବସିଲେ । ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ଘରଣୀକୁ ଡାକି କହିଲେ—

"ଭାଉଜ, ମୋତେ ଜଣକୁ ପାଞ୍ଚ ଶହ ଟଙ୍କା ଦେବାକୁ ହେବ ।

ପାଞ୍ଚଟଙ୍କା କମି ପଡୁଛି ଦେବକି ?"

ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ଘରଣୀ ପାଞ୍ଚଟଙ୍କା ଆଣି ଦେଲେ । ରଙ୍କ-ରତନ ବାବୁ କହିଲେ—"ସେଥିରେ ତୁମ ନାଆଁ ଲେଖିଦିଅ ?

ନାଆଁ ଲେଖିଦେଲେ ସେ ।

ରଙ୍କ-ରତନ ବାବୁ ଏଥର ଯାଇଁ ପାଞ୍ଚଟଙ୍କା ଟେବୁଲ ଉପରେ ଥୋଇ ଦେଲା ମାତ୍ରେ, ଇନ୍ଦ୍ରଦ୍ୟୁମ୍ନ ବାବୁ ଝଟ୍‌କରି ପକେଟରେ ପୁରାଇ ଦେଇ, ଅତି ପରିଚିତଙ୍କ ଭଳି ହସି ହସି ପଚାରିଲେ –

"ଆପଣଙ୍କର କି କାମ ?"

ରଙ୍କ-ରତନ ବାବୁ କହିଲେ—"ମୋର ବିଶେଷ କିଛି କାମ ନାହିଁ ଆଜ୍ଞା । ଆପଣଙ୍କ ଭଳି ଜଣେ ପୁଣ୍ୟାତ୍ମାଙ୍କ ଶ୍ରୀମୁଖରୁ ପଦେ ଅମୃତ ବଚନ ଶୁଣିବାକୁ ଚାହୁଁଥିଲି ।"

ତାପରେ ସେ ଚାଲି ଆସିଲେ ।

ଇନ୍ଦ୍ରଦ୍ୟୁମ୍ନ ବାବୁ ଚପରାଶିକୁ ଡାକି କହିଲେ —"ଏ ଲୋକଟାତ ବଡ଼ ଅଦ୍ଭୁତ ଧରଣର ।

ତା'ପରେ,

ଆଉ ଜଣେ ରିଟାୟାର୍ଡ ଅଫିସର୍‌ ଆସିଲେ କିଛି କାମ ପାଇଁ । ତାଙ୍କୁ ମଧ୍ୟ ଉଞ୍ଜୀସ୍ଥ ବହୋକ୍ରରେ ପଇସା ଦେବାକୁ ନିର୍ଦ୍ଦେଶ ଦିଆଗଲା । ସେ ଅଦଳୀଙ୍କ ଜରିଆରେ ପୁଅ ସ୍ୱୟଂ ହାକିମ ପ୍ରବୋଧଚନ୍ଦ୍ରଙ୍କଠାରୁ କିଛି ପଇସା ଆଣି ପେଷ୍କାରଙ୍କୁ ଦେଲେ ।

କିଛି ସମୟ ପରେ,

ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ଘରୁ ଖବର ଆସିଲା—"ଶୀଘ୍ର ଘରକୁ ଆସ । କିଏ କୁଣିଆ ଆସିଛନ୍ତି ।"

ଇନ୍ଦ୍ରଦ୍ୟୁମ୍ନ ବାବୁ ଚଷମାକୁ ଟେକି ପଚାରିଲେ—"ଅଦିନ କୁଣିଆ କିଏ ମ ?"

ଯାହାହେଉ,

ଇନ୍ଦ୍ରଦ୍ୟୁମ୍ନ ବାବୁ ଘରକୁ ଫେରିଲେ । ଗୋଡ଼ ହାତ ଧୋଇବାକୁ ଯିବା ପୂର୍ବରୁ ଘରଣୀଙ୍କ ହାତକୁ ପକେଟରୁ ସବୁ ଟଙ୍କା ପଇସା କାଢ଼ି ଦେଇଗଲେ ।

ଘରଣୀ ଗଣିଲେ ।

ସେ ନିଜେ ଦେଇଥିବା ଟଙ୍କାଟିକୁ ଦେଖି ହସିଲେ । ଖାଲି ହସିଲେ । ମନେ ମନେ ଲାଜରେ ବି ସଢ଼ିଗଲେ । ରଙ୍ଗରତନ ବାବୁ କହୁଥିବେ କ'ଣ ?

ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କୁ ରଙ୍ଗରତନ ବାବୁ ନମସ୍କାର ହେଲେ । ଇନ୍ଦ୍ରଦ୍ୟୁମ୍ନ ବାବୁଙ୍କ ଦେହରୁ ଅଧେ ରକ୍ତ ଶୁଖିଗଲା । ସେ ଭାବିଲେ—

"ଏଇତ ମୋତେ ପାଞ୍ଚଟଙ୍କା ଦେଇଥିଲେ ।"

ଏଥର ଖାଇବାକୁ ଆଣ ବୋଲି ଘରଣୀକୁ ଡାକିଲେ ଇନ୍ଦ୍ରଦ୍ୟୁମ୍ନ ବାବୁ । ଘରଣୀ ଶୋଷଘରେ ଥାଇ ଡାକିଲେ—"ତୁମେ ଆଗେ ଆସିଲ, ପ୍ଲାଡ଼େ ଶୁଣିଗଲ ?"

ଇନ୍ଦ୍ରଦ୍ୟୁମ୍ନ ବାବୁ ଗଲେ ।

ଘରଣୀ କହିଲେ—"ତୁମେ ପେସ୍କାର ହୋଇଛ ବୋଲି କ'ଣ ଭଉଣୋଇଠାରୁ ବି ପେସ୍କାର ପାଉଣା ନେବ ? ଇନ୍ଦ୍ରଦ୍ୟୁମ୍ନ ବାବୁ ପାଟିରେ ହାତଦେଇ କହୁଥିଲେ—"ମୋ ରାଣ ଚୁପ୍ ଚୁପ୍ ।"

